ବିଜ୍ଞାନ ପ୍ରଚାର ସମିତି

ଗ୍ରନ୍ଥମାଳା

# ଜନ୍ମ-ନିୟନ୍ତ୍ରଣ



# ଜନ୍ମ-ନିୟନ୍ତ୍ରଣ

ବିଜ୍ଞାନ ପ୍ରଚାର ସମିତି ଗ୍ରନ୍ଥମାଳା
ତୃତୀୟ ଖଣ୍ଡ

ପ୍ରକାଶକ
କଟକ ପବ୍ଲିଶିଂ ହାଉସ
ନୟାସଡ଼କ, କଟକ—୨

# ବିଜ୍ଞାନ ପ୍ରଚାର ସମିତିର ଲକ୍ଷ୍ୟ

ବର୍ତ୍ତମାନ ହେଉଛି ବିଜ୍ଞାନର ଯୁଗ । ପୃଥିବୀର ସଭ୍ୟ ଜାତିମାନେ ବିଜ୍ଞାନ ସାହାଯ୍ୟରେହିଁ ବଡ଼ ହୋଇ ପାରିଛନ୍ତି । ପ୍ରଗତି ପଥରେ ଅଗ୍ରସରହେବାକୁ ହେଲେ ବିଜ୍ଞାନର ନୂତନ ବାର୍ତ୍ତା ଦେଶର ପ୍ରତ୍ୟେକ ନରନାରୀଙ୍କଠାରେ ପହଞ୍ଚିବା ଦରକାର । ଜନସାଧାରଣଙ୍କଠାରେ ଏହି ବାର୍ତ୍ତା ପହଞ୍ଚାଇବା ଶିକ୍ଷିତ ସଂପ୍ରଦାୟର ପ୍ରଧାନ କର୍ତ୍ତବ୍ୟ । ଏହି କଳ୍ପନା ନେଇ ବିଜ୍ଞାନ ପ୍ରଚାର ସମିତି ଅନୁଷ୍ଠିତ ହୋଇଛି । ଯେତେଦୂର ସଂଭବ ସରଳ ଓଡ଼ିଆ ଭାଷାରେ ବିଭିନ୍ନ ବୈଜ୍ଞାନିକ ତଥ୍ୟ ପ୍ରକାଶ କରିବା, ବକ୍ତୃତା, ଚଳଚ୍ଚିତ୍ର ଓ ମ୍ୟାଜିକ ଲଣ୍ଠନ ସାହାଯ୍ୟରେ ଲୋକଙ୍କୁ ସେ ବିଷୟରେ ବୁଝାଇବା ହେଉଛି ବର୍ତ୍ତମାନ ଆମମାନଙ୍କର ଲକ୍ଷ୍ୟ । ବୈଜ୍ଞାନିକ ଶବ୍ଦାବଳୀର ପ୍ରକୃତ ଓଡ଼ିଆ ପରିଭାଷା ଅଦ୍ୟପର୍ଯ୍ୟନ୍ତ ହୋଇ ନ ଥିବାରୁ ସରଳ ଓଡ଼ିଆ ଭାଷାରେ ଲେଖିବା ଅନେକ ସମୟରେ ସଂଭବ ହୋଇ ପାରୁନାହିଁ । ଆଶାକରାଯାଏ, ଜନସାଧାରଣଙ୍କର ସକ୍ରିୟ ସାହାଯ୍ୟ ଓ ସହଯୋଗ ପାଇ ଅଳ୍ପ ସମୟ ଭିତରେ ଆମେମାନେ ଏ ଦିଗରେ କୃତକାର୍ଯ୍ୟ ହୋଇ ପାରିବୁ । ସେମାନଙ୍କଠାରୁ ଏ ଦିଗରେ ପ୍ରେରଣା, ସମାଲୋଚନା ଓ ମନ୍ତବ୍ୟ ଅତି ଆନନ୍ଦର ସହିତ ଗ୍ରହଣ କରିବୁ ।

ଯୁଗ୍ମ ସଂପାଦକ
**ଡକ୍ଟର ରାଧାନାଥ ରଥ**
ଅଧ୍ୟାପକ ରେଭେନ୍ସା କଲେଜ, କଟକ
**ଡକ୍ଟର ବସନ୍ତକୁମାର ବେହୁରା**
ଅଧ୍ୟାପକ ରେଭେନ୍ସା କଲେଜ, କଟକ

ବିଜ୍ଞାନ ପ୍ରଚାର ସମିତି ଗ୍ରନ୍ଥମାଳା—ପ୍ରଥମ ଖଣ୍ଡ

## ପରମାଣୁ ବୋମାର ଆବିଷ୍କାର    ମୂଲ୍ୟ ଟ ୩୯

ଲେଖକ—ଅଧ୍ୟାପକ ଶ୍ରୀ ଗୋକୁଳାନନ୍ଦ ମହାପାତ୍ର ଏମ୍. ଏସ୍‌ସି.

ଏଥିରେ ପରମାଣୁ ବୋମାର ତତ୍ତ୍ୱ ଠାରୁ ଆରମ୍ଭ କରି ତତ୍‌ସମ୍ପର୍କୀୟ ଯାବତୀୟ ବିଷୟ ସରଳ ଓଡ଼ିଆ ଭାଷାରେ ଆଲୋଚିତ ହୋଇଅଛି । ହାଇଡ୍ରୋଜେନ୍ ବୋମା ସମ୍ବନ୍ଧରେ ମଧ୍ୟ ଏଥିରେ ବିଶଦ ଆଲୋଚନା କରି ଯାଇଅଛି । ସମସ୍ତଙ୍କର ଏ ବହିଟିକୁ ଥରେ ପଢ଼ିବା ଉଚିତ ।

ବିଜ୍ଞାନ ପ୍ରଚାର ସମିତି ଗ୍ରନ୍ଥମାଳା—ଦ୍ୱିତୀୟ ଖଣ୍ଡ

## ଖାଦ୍ୟ    ମୂଲ୍ୟ ଟ ୧ ।

ସୁଷମଖାଦ୍ୟ, ଗର୍ଭବତୀର ଖାଦ୍ୟ, ଶିଶୁଖାଦ୍ୟ ପ୍ରଭୃତି ଆଠଗୋଟି ଖାଦ୍ୟ ସମ୍ବନ୍ଧୀୟ ପ୍ରବନ୍ଧ ଏଥିରେ ସନ୍ନିବେଶିତ ହୋଇଅଛି । ଓଡ଼ିଶାର କେତେଜଣ ଖ୍ୟାତନାମା ଡାକ୍ତର ଓ ଅଧ୍ୟାପକ ଏହି ପ୍ରବନ୍ଧଗୁଡ଼ିକୁ ଲେଖିଛନ୍ତି । ଆମର ଦୈନନ୍ଦିନ ଖାଦ୍ୟ ବିଷୟରେ ନାନା ତଥ୍ୟ ଏହି ବହିଟିରୁ ମିଳିବ ।

ବିଜ୍ଞାନ ପ୍ରଚାର ସମିତି ଗ୍ରନ୍ଥମାଳା—ତୃତୀୟ ଖଣ୍ଡ

## ଜନ୍ମ-ନିୟନ୍ତ୍ରଣ

ଆମ ଦେଶର ବର୍ତ୍ତମାନ ପରିସ୍ଥିତିରେ ଜନ୍ମ-ନିୟନ୍ତ୍ରଣର ଉପାଦେୟତା ବିଷୟରେ ଜନସାଧାରଣଙ୍କୁ ବୁଝାଇବା ଦରକାର ନାହିଁ । ସମସ୍ତେ ଏ ବିଷୟରେ ଅଗ୍ରହୀ । କିନ୍ତୁ କି ଉପାୟରେ ଏହା ସମ୍ଭବ ତାହା ଅନେକେ ଜାଣିବାକୁ ଚାହାନ୍ତି । ଏ ଦିଗରେ 'ଜନ୍ମ-ନିୟନ୍ତ୍ରଣ' ବହି ଖଣ୍ଡିକ ଯେ ବହୁତ ସାହାଯ୍ୟ କରିବ ଏଥିରେ ସନ୍ଦେହ ନାହିଁ ।

ବିଜ୍ଞାନ ପ୍ରଚାର ସମିତିର ଅନ୍ୟାନ୍ୟ ବହି ଅଳ୍ପ ଦିନ ଭିତରେ ପ୍ରକାଶ ପାଇବ ।

# ସୂଚୀ





# ଜନ୍ମ-ନିୟନ୍ତ୍ରଣ

## ଲୋକସଂଖ୍ୟା-ନିୟନ୍ତ୍ରଣ

ଶ୍ରୀ ବୈଦ୍ୟନାଥ ମିଶ୍ର

ନିୟନ୍ତ୍ରଣ ଏକ ଅର୍ଥନୈତିକ ବ୍ୟବସ୍ଥା । ଜିନିଷପତ୍ର ଦରଦାମ ରୋକିବା ପାଇଁ ଯେପରି ନିୟନ୍ତ୍ରଣ ଜାରି କରାଯାଇଛି, ଦେଶର ଅର୍ଥନୀତିକୁ ସୁସଂଗଠିତ କରିବା ପାଇଁ ସେହିପରି ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ନିୟନ୍ତ୍ରଣ ଜାରି କରାଯାଇପାରେ । ଅର୍ଥନୈତିକ ଯୋଜନା ସହିତ ନିୟନ୍ତ୍ରଣ ଘନିଷ୍ଠଭାବରେ ସଂପୃକ୍ତ । ସାମ୍ୟବାଦର ଏହା ମୂଳମନ୍ତ୍ର । ବ୍ୟକ୍ତିଗତ ପୁଞ୍ଜିର ଗଲତ୍ ପରିଚାଳନା ଫଳରେ ଯଦି ଆମ ଦେଶରେ ଦେଶୀ ମଟର, ସାଇକଲ୍, ଜାହାଜ, ଗୁଳିବାରୁଦ ପ୍ରଭୃତି ତିଆରି ହୁଏ ଓ ଧାନଚାଉଳ, ଲୁଗାପଟା, ଘରଦ୍ୱାର ପ୍ରଭୃତି ଅତି ଦରକାରୀ ଜିନିଷର ଅଭାବ ପଡ଼େ, ତା ହେଲେ ନିୟନ୍ତ୍ରଣ ଜାରି କରି ବଳକା ଜିନିଷକୁ କମାଇ, କମଥିବା ଜିନିଷକୁ ବଢ଼ାଇବା ଅର୍ଥନୈତିକ ଯୋଜନାର ପରିସର ଭିତରେ ଆସିବ । ସେହିପରି ଜନସଂଖ୍ୟା ଯେତେବେଳେ ବଢ଼ି ଚାଲିଛି, ସେତେବେଳେ ନିୟନ୍ତ୍ରଣ ଜାରି କରି ଜନ ଉତ୍ପାଦନକୁ କମାଇ ଲୋକସାଧାରଣଙ୍କର ବଞ୍ଚିବା ପ୍ରଣାଳୀର ଉନ୍ନତି କରିବା ଏକ ଅର୍ଥନୈତିକ ଯୋଜନା । ଯୌନ ଏକ ସାମାଜିକ ପ୍ରକ୍ରିୟା । କିନ୍ତୁ ଜନ୍ମ ଓ ଉତ୍ପାଦନ ଅର୍ଥନୈତିକ ପରିସ୍ଥିତି ସହିତ ଘନିଷ୍ଠ ଭାବରେ ସଂପୃକ୍ତ । ଜନସଂଖ୍ୟା ବୃଦ୍ଧି ହେବା ଫଳରେ ଯଦି ଅଭାବ ଓ ଅନାଟନ ପଡ଼ିନ୍ତା ନାହିଁ, ବଞ୍ଚିବାର ପ୍ରଣାଳୀରେ ଅବନତି ଘଟନ୍ତା ନାହିଁ କିମ୍ବା ରୋଗ ଓ ମୃତ୍ୟୁ ପ୍ରଭୃତି ଦୁଃସାଧ୍ୟ ଜିନିଷର ପରିସର

ବୃଦ୍ଧି ପା’ନ୍ତା ନାହିଁ, ତା ହେଲେ ଜନ୍ମନିରୋଧ ବା ଜନ୍ମନିୟନ୍ତ୍ରଣ ପ୍ରଶ୍ନ ଆମେ ଏଠାରେ ଆଲୋଚନା କରନ୍ତେ ନାହିଁ । ବିଶିଷ୍ଟ ଅର୍ଥନୈତିକ ଅଡାମ୍ ସ୍ମିଥ୍ଙ୍କ ଭାଷାରେ ପ୍ରତ୍ୟେକ ଲୋକ ଅବଶ୍ୟ ଜନ୍ମ ହେବାବେଳେ ଦୁଇଟି ହାତ ଧରି ଆସୁଛି । କିନ୍ତୁ ଦୁଃଖର କଥା ଯେ ଆମ ଦେଶରେ ଜଣେ ଲୋକର ଦୁଇଟି ହାତ ତାର ପେଟର କ୍ଷୁଧାକୁ ବର୍ତ୍ତମାନ ମେଣ୍ଟାଇ ପାରୁ ନାହିଁ । ତେଣୁ ଭବିଷ୍ୟତରେ ହାତ ଓ ପେଟର ସଂଖ୍ୟା କମାଇ, ସମାଜର ଅର୍ଥନୈତିକ ଭିତ୍ତିକୁ ଦୃଢ଼ ଓ ମଜବୁତ କରିବା ଆମ ଆଗରେ ଅଜ୍ଞ ପ୍ରଧାନ ପ୍ରଶ୍ନ । ବସ୍ତୁର ବୃଦ୍ଧି ଘଟାଇ ବୈଜ୍ଞାନିକ ଉପାୟରେ ଏ ନିୟନ୍ତ୍ରଣର ବ୍ୟବସ୍ଥା ନ କଲେ, ପ୍ରାକୃତିକ ନିୟମ ଅନୁସାରେ ରୋଗ, ଦୁର୍ଭିକ୍ଷ, ମନ୍ୱନ୍ତରରେ ଆପେ ଆପେ ଲୋକସଂଖ୍ୟା ଯେ କମିଯିବ, ଏଥିରେ ସନ୍ଦେହ ନାହିଁ । ତେଣୁ ଆମର ବିଶ୍ୱାସ ଯେ କୌଣସି ବୁଦ୍ଧିମାନ୍ ଲୋକ ଜନସଂଖ୍ୟାର ନିୟନ୍ତ୍ରଣ ପାଇଁ ପ୍ରାକୃତିକ ନିୟମ ଉପରେ ନିର୍ଭର ନ କରି, ବୈଜ୍ଞାନିକ ପନ୍ଥାର ଆଶ୍ରୟ ନେବ । କିନ୍ତୁ ପ୍ରଥମେ ଅବସ୍ଥାର ଗୁରୁତ୍ୱ ଦେଖାଯାଉ ।

ଆମ ଦେଶରେ ଗତ ୫୦ ବର୍ଷ ଭିତରେ ଲୋକସଂଖ୍ୟା ଅତି ଦ୍ରୁତଗତିରେ ବଢ଼ି ଚାଲିଛି । ୧୯୦୧ ମସିହାରେ ଭାରତର ଜନସଂଖ୍ୟା ମୋଟରେ ପ୍ରାୟ ସାଢ଼େ ୨୩ କୋଟି ଥିଲା । ୧୯୫୧ରେ ଏହା ବଢ଼ି ସାଢ଼େ ୩୫ କୋଟି ହୋଇଛି । ତେଣୁ ପଚାଶ ବର୍ଷ ଭିତରେ ଆମର ଜନସଂଖ୍ୟା ଶତକଡ଼ା ୫୨ ବଢ଼ିଛି । ଜାମ୍ମୁ ଓ କାଶ୍ମୀରର ହିସାବ ଏହା ଭିତରେ ଧରା ଯାଇନାହିଁ । ହୁଏତ ଜାମ୍ମୁ ଓ କାଶ୍ମୀରର ହିସାବ ନେଲେ ଜନସଂଖ୍ୟା ଆଉ କିଛି ଅଧିକ ବଢ଼ିବ । ସେ ଯାହାହେଉ ଜନସଂଖ୍ୟା ବର୍ତ୍ତମାନ ମଧ୍ୟ ବୃଦ୍ଧି ହୋଇ ଚାଲିଛି । ଶତାବ୍ଦୀର ଆରମ୍ଭରେ ଯେଉଁ ହାରରେ

ଜନସଂଖ୍ୟା ବଢୁଥିଲା, ବର୍ତ୍ତମାନ ହାର ତା'ଠାରୁ ଅଧିକ । ୧୯୦୧ରୁ ୧୯୧୧ ଭିତରେ ଶତକଡ଼ା ୭, ୧୯୧୧ରୁ ୧୯୨୧ ଭିତରେ ଶତକଡ଼ା ୧୧, ୧୯୨୧ରୁ ୧୯୩୧ ଭିତରେ ଶତକଡ଼ା ୧୧, ୧୯୩୧ରୁ ୧୯୪୧ ରେ ଶତକଡ଼ା ୧୪·୩ ଓ ୧୯୪୧ରୁ ୧୯୫୧ ଭିତରେ ଶତକଡ଼ା ୧୩·୪ ହାରରେ ଜନସଂଖ୍ୟା ଆମ ଦେଶରେ ବୃଦ୍ଧି ପାଉଛି । ଜନ୍ମ ଓ ମୃତ୍ୟୁ ଏବଂ ଜନଗଣନା ହିସାବରେ ଅନେକ ଭୁଲ ଥିଲେ ମଧ୍ୟ ହାରାହାରି ଭାବରେ ଏ ହିସାବଗୁଡ଼ିକୁ ସତ୍ୟ ବୋଲି ଧରି ନିଆ ଯାଇପାରେ । ଗତ ୨୦ ବର୍ଷ ଭିତରେ ଜନସଂଖ୍ୟାର ଅଧିକ ବୃଦ୍ଧିର କାରଣ ଆଲୋଚନା କରି ଯୋଜନା କମିଶନ ମତ ପ୍ରକାଶ କରିଛନ୍ତି ଯେ ପୂର୍ବାପେକ୍ଷା ଜନ୍ମ ହାର ନ ବଢ଼ି ମୃତ୍ୟୁ ହାର କମି ଥିବା ଫଳରେ ଗତ କେତେବର୍ଷ ଭିତରେ ଜନସଂଖ୍ୟାର ବିଶେଷ ବୃଦ୍ଧି ହୋଇଛି । ଉଦାହରଣ ସ୍ୱରୂପ ୧୯୪୯ରେ ଆମର ଜନ୍ମ ହାର ୨୬·୬ ଓ ମୃତ୍ୟୁହାର ୧୬·୪; କିନ୍ତୁ ଶତାବ୍ଦୀର ପ୍ରଥମ ଭାଗରେ ଆମର ଜନ୍ମର ହାର ଥିଲା ୩୮ ଓ ମୃତ୍ୟୁର ହାର ଥିଲା ୩୪ । ଅର୍ଥାତ୍ ୧୯୪୯ରେ ଜନ୍ମ ହାର କମିଅଛି ଓ ମୃତ୍ୟୁହାର କମିଛି କିନ୍ତୁ ଜନ୍ମହାରଠାରୁ ମୃତ୍ୟୁହାର ଖୁବ୍ ଅଧିକ ପରିମାଣରେ କମିଥିବାରୁ, ଜନସଂଖ୍ୟା ବିଶେଷ ଭାବରେ ବଢ଼ିଛି । ଆମ ଦେଶର ହିସାବ କିତାବରେ ଅନେକ ଗୋଳମାଳ ଥିବାରୁ ବର୍ଷକର ଖବର ଅନ୍ତରରୁ ଆମ ମତ ଠିକ ନ କରି ୧୦।୧୫ ବର୍ଷର ହାରାହାରି ହିସାବ ନେଇ ମତ ପ୍ରକାଶ କରିବା ଉଚିତ ହେବ । ସେ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ ୧୯୩୧ ଓ ୧୯୪୧ ଭିତରେ ଆମ ଦେଶର ଜନ୍ମହାର ୪୫ ଓ ମୃତ୍ୟୁହାର ୩୧ ବୋଲି ଠିକ କରାଯାଇଛି । କିନ୍ତୁ ୧୯୦୧ ଠାରୁ ୧୯୧୧ ଭିତରେ ଜନ୍ମହାର ୪୯ ଓ ମୃତ୍ୟୁହାର ୪୩ ବୋଲି ଗଣନା କରାଯାଇଛି । ଏଥିରୁ

ଦେଖାଯିବ ଯେ ଜନ୍ମହାର ୪ କମିଲାବେଳକୁ ମୃତ୍ୟୁହାର ୧୬ କମିଛି । ତେଣୁ ଆମ ଦେଶର ଲୋକସଂଖ୍ୟା ଖୁବ୍ ଦ୍ରୁତଗତିରେ ବଢ଼ିଚାଲିଛି । ମୃତ୍ୟୁ ହାର କମିବା କାରଣ ଅନୁସନ୍ଧାନ କରିବା ବେଶୀ କିଛି କଷ୍ଟ ନୁହେଁ । ଗତ ୧୫।୨୦ ବର୍ଷ ଭିତରେ ଆମ ଦେଶରେ ଚିକିତ୍ସାବିଜ୍ଞାନର ଅନେକ ଉନ୍ନତି ହୋଇଛି । ନାନା-ପ୍ରକାର ଔଷଧର ଉଦ୍ଭାବନ, ଚିକିତ୍ସା ପାଇବାର ସୁବିଧା, ଚିକିତ୍ସା କରିବାର ଇଚ୍ଛା ପ୍ରଭୃତି ନାନା କାରଣରୁ ମୃତ୍ୟୁହାର କମିଛି ବୋଲି ସ୍ୱଚ୍ଛନ୍ଦରେ କୁହାଯାଇ ପାରେ । ଏହିପରି ଭାବରେ ମୃତ୍ୟୁହାର ଯଦି କମେ ଓ ଜନ୍ମ ନିରୋଧ ବା ନିୟନ୍ତ୍ରଣ କରିବାର କିଛି ଚେଷ୍ଟା କରା ନ ଯାଏ, ତା ହେଲେ ହୁଏତ ଉତ୍ତରୋତ୍ତରରେ ଜନସଂଖ୍ୟା ଅଧିକା ହାରରେ ବଢ଼ିବାର ସମ୍ଭାବନା । ପୂର୍ବରେ ହୁଏ ତ ଜନ-ଅର୍ଥନୀତିର ପ୍ରବର୍ତ୍ତକ ମାଲ୍‌ଥସ୍‌ଙ୍କ କହିବା ଅନୁଯାୟୀ ଯେତେ ଲୋକ ଜନ୍ମ ହେଉଥିଲେ, ସେଥି ଭିତରୁ ଅଧିକାଂଶ ଲୋକ ପ୍ରାକୃତିକ ଦୁର୍ବିପାକରେ ମୃତ୍ୟୁମୁଖରେ ପଡ଼ୁଥିଲେ ବୋଲି ସାମାଜିକ ଓ ଅର୍ଥନୈତିକ ଭିତ୍ତି ଓ ଚଳିବା ପ୍ରଣାଳୀ ଯେ କୌଣସି ମତରେ ଚଳିଯାଉଥିଲା । କିନ୍ତୁ ବର୍ତ୍ତମାନ ଅବସ୍ଥାକୁ ଯଦି ଏଭଳି ଛାଡ଼ି ଦିଆଯାଏ ତା ହେଲେ ଏହା ଏକାବେଳକେ ଭୁଷୁଡ଼ି ପଡ଼ିବ ।

ଏକ ଆଡ଼େ ଆମର ଜନସଂଖ୍ୟା ବଢ଼ି ଚାଲିଛି—କିନ୍ତୁ ଅନ୍ୟ ଆଡ଼େ ଅର୍ଥନୈତିକ ଅବନତି ଘଟୁଛି । ଆମର ଅଧିକାଂଶ ଲୋକ ଅଳ୍ପ ବେକାର । କୋଟି କୋଟି ଲୋକ ଉପାସ । ଯୁଦ୍ଧ ସମୟରେ ଭଲରେ ହେଉ ବା ମନ୍ଦରେ ହେଉ, କେତେକ ଲୋକ କିଛି ନା କିଛି କାମ ପାଇ ଯାଉଥିଲେ । ଯୁଦ୍ଧପରେ ବେକାର ସମସ୍ୟା ବଢ଼ି ଚାଲିଛି । ୧୯୧୧ରେ କୃଷି ଉପରେ ଯେତିକି ଲୋକ ନିର୍ଭର କରୁଥିଲେ, ଆଜି ତାଠାରୁ ଅଧିକ ଲୋକ ନିର୍ଭର

କରୁଛନ୍ତି । ୧୯୧୧ ରେ କାମିକା ଲୋକମାନଙ୍କ ଭିତରୁ ଶତକଡ଼ା ୭୧ କୃଷିରେ ଖଟି ଜୀବିକା ଉପାର୍ଜନ କରୁଥିଲେ । ଜାତୀୟ ଆୟ କମିଟି ହିସାବରେ ୧୯୪୮ରେ କାମିକା ଲୋକଙ୍କ ଭିତରୁ ଶତକଡ଼ା ୬୮.୨ କୃଷିରେ କାମ କରୁଛନ୍ତି । ଏକଥା ସମସ୍ତେ ଜାଣନ୍ତି ଯେ ଯେଉଁମାନେ କୃଷି ବ୍ୟବସାୟରେ କାମ କରନ୍ତି, ସେମାନଙ୍କୁ ବର୍ଷସାରା କାମ ମିଳେ ନାହିଁ । ବର୍ଷରେ ୫।୬ ମାସ କାମ— ଆଉ ୫।୬ ମାସ ବେକାର । ତେଣୁ ଆମ ଦେଶରେ ଅଧା ବେକାରଙ୍କ ସଂଖ୍ୟା ଖୁବ୍ ଜୋରସୋରରେ ବଢ଼ିଚାଲିଛି । ଗତ ୩୦।୪୦ ବର୍ଷ ଭିତରେ ଶିଳ୍ପର ଅନେକ ଉନ୍ନତି ହୋଇଛି । କିନ୍ତୁ ଏହା ଫଳରେ ବେକାର ସଂଖ୍ୟା ଟିକିଏ ହେଲେ କମି ପାରି ନାହିଁ । ଶିଳ୍ପରେ ଆଜି ମୋଟେ ୨୪ ବା ୨୫ ଲକ୍ଷ କାମ କରୁଛନ୍ତି । ଶିଳ୍ପରେ କାମ କରୁଥିବା ଲୋକମାନଙ୍କ ଅନୁପାତ ମଧ୍ୟ କମି କମି ଚାଲିଛି । ୧୯୧୧ରେ ମୋଟ ଜନସଂଖ୍ୟାର ଶତକଡ଼ା ୫.୫ ଶିଳ୍ପରେ କାମ କରୁଥିଲେ । ୧୯୨୧ରେ ଏହା କମି ୪.୯ ହେଲା । ୧୯୩୧ରେ ପୁଣି କମି ୪.୩ ହେଲା । ତେଣୁ ଆମ ଦେଶର ଅଧିକାଂଶ ଲୋକ ସେହି ଜମି ଉପରେ ନିର୍ଭର କରି ଚାଲିଛନ୍ତି । ଫଳରେ ଜଣପିଛା ଜମି କମୁଛି ଓ ଜମି ଉପରେ ନିର୍ଭର କରୁଥିବା ଲୋକମାନଙ୍କର ବଞ୍ଚିବା ହାର କମି କମି ଯାଉଛି ।

ଜଣପିଛା ଜମିହାର ଓ ଜମିର ଉତ୍ପାଦିକା ଶକ୍ତି ଯେପରି ଭାବରେ କମି ଚାଲିଛି, ତାହା ପ୍ରକୃତରେ ବିପଦଜନକ । ଜନସଂଖ୍ୟା ନ କମାଇଲେ ଆମର ଅର୍ଥନୈତିକ ଅବସ୍ଥା ଯେ କଣ ହେବ ତାହା କହି ହେଉ ନାହିଁ । ୧୯୧୧ ରେ ଆମର ଜଣପିଛା ଜମିର ପରିମାଣ ଥିଲା ୦.୯୦ ଏକର । ୧୯୨୧ରେ ଏହା କମି ୦.୮୮ ହେଲା । ୧୯୩୧ ଓ ୧୯୪୧ରେ ଏହା ପୁଣି କମି ଯଥାକ୍ରମେ ୦.୮୨ ଓ ୦.୭୨

ଏକର ହେଲା । ଏଥିରୁ ଦେଖାଯିବ ଯେ ୩୦ବର୍ଷ ଭିତରେ ଜଣପିଛା ଜମିପରିମାଣ ଶତକଡ଼ା ୨୦ କମିଛି । ୧୯୪୮ ହିସାବରେ, ଭାରତ ବିଭକ୍ତ ପରେ ପୁଣି ଦେଖାଯାଉଛି ଯେ ବର୍ତ୍ତମାନ ଜଣପିଛା ଜମି ପରିମାଣ ୧୯୪୧ ଠାରୁ କମ—ଅର୍ଥାତ୍ ବର୍ତ୍ତମାନ ଜଣ ପିଛା ଜମିର ପରିମାଣ ୦·୭୧ ଏକର । ଜମିର ପରିମାଣ କମୁଥିବାବେଳେ, ଜମିର ଉତ୍ପାଦିକା ଶକ୍ତି ବଢୁଥିଲେ କିଛି କ୍ଷତି ହୁଅନ୍ତା ନାହିଁ । କିନ୍ତୁ ଦୁଃଖର କଥା ଯେ ଗତ ୩୦।୪୦ ବର୍ଷ ଭିତରେ ଜମିର ଉତ୍ପାଦିକା ଶକ୍ତି ମଧ୍ୟ କମି ଗଲାଣି । ହିସାବ କିତାବ ଦେଇ ପ୍ରବନ୍ଧଟିକୁ ଅରୁଚିକର କରିବା ଲେଖକଙ୍କର ଇଚ୍ଛା ନୁହେଁ । କିନ୍ତୁ ହିସାବ ନ ଦେଇ ମତ ପ୍ରକାଶ କଲେ ହୁଏତ କେହି ବିଶ୍ୱାସ କରିବେ ନାହିଁ । ତେଣୁ ବାଧ୍ୟ ହୋଇ କେତେକ ହିସାବ ଦେବାକୁ ପଡୁଛି । ବର୍ତ୍ତମାନ ଜମିର ଉତ୍ପାଦିକା ଶକ୍ତି ଦେଖାଯାଉ । ୧୯୩୧-୩୩ ରେ ଏକର ପିଛା ହାରାହାରି ଆମେ ୮୫୨ ପାଉଣ୍ଡ ଧାନ ଓ ୬୦୭ ପାଉଣ୍ଡ ଗହମ ଅମଦାନୀ କରୁଥିଲୁ । ୧୯୪୩-୪୫ ହିସାବରେ ଦେଖାଯାଉଛି ଧାନ ପରିମାଣ କମି ୭୭୯ ପାଉଣ୍ଡ ହୋଇଛି । ଗହମରେ ସାମାନ୍ୟ ଉନ୍ନତି ହୋଇଛି । ୬୦୭ ପାଉଣ୍ଡ ଜାଗାରେ ଆମେ ୬୨୪ ପାଉଣ୍ଡ ପାଉଛେ । ଅଥଚ ଚୀନ, ଜାପାନ, ଇଟାଲି ପ୍ରଭୃତି ଦେଶମାନଙ୍କରେ ଦୁଇ ତିନିଗୁଣ ଲୋକେ ଅଧିକ ଅମଦାନୀ କରୁଛନ୍ତି । ଜଣେ ଲୋକର ଭଲରକମ ଚଳିବା ପାଇଁ ଅନ୍ତତଃ ହାରାହାରି ଏକ ଏକର ଜମି ଦରକାର । କିନ୍ତୁ ଆମର ଜଣପିଛା ଜମି ଏକରରୁ କମ ଓ ଉତ୍ପାଦିକା ଶକ୍ତି ମଧ୍ୟ ହାରାହାରି ପୂର୍ବାପର । ଏପରି ଅବସ୍ଥାରେ ଦୈନ୍ୟ ଓ ଦୁର୍ଭିକ୍ଷ ନ ପଡ଼ିବ କାହିଁକି ? ଆମ ଦେଶରେ ବର୍ତ୍ତମାନ ଯେ ଖାଦ୍ୟ ଅଭାବ ପଡ଼ିଛି, ବୋଧହୁଏ ଜନସଂଖ୍ୟା ବୃଦ୍ଧି ଏହାର ଏକ ପ୍ରଧାନ କାରଣ । ସରକାର ଅଧିକ ଖାଦ୍ୟ ଉତ୍ପାଦନ

ଯୋଜନା କରି ଜମିର ଉତ୍ପାଦିକା ଶକ୍ତି ବଢ଼ାଇବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ଯୋଜନା ବିଶେଷ କିଛି ଫଳପ୍ରଦ ହୋଇ ନାହିଁ । କୃଷିଜମି ବଢ଼ାଇବାକୁ ମଧ୍ୟ ଚେଷ୍ଟା କରାଯାଉଛି । କୃଷିଜମି କିଛି ବଢ଼ା ଯାଇ ପାରେ । କିନ୍ତୁ ଏ ଦିଗରେ ବିଶେଷ ଉନ୍ନତିର କାରଣ ସମ୍ଭାବନା ନାହିଁ । ଭିନ୍ନ ଭିନ୍ନ ପ୍ରଦେଶମାନଙ୍କରେ ପଡ଼ିଆ ଜମି ଖୁବ୍ କମ ଅଛି ବୋଲି ହିସାବ କରାଯାଉଛି । ଏହି ହିସାବରୁ ଦେଖାଯାଉଛି ଯେ କୃଷି ଉପଯୋଗୀ ଜମି ଭିତରୁ ୯୯ ଭାଗ ବିହାରରେ, ୮୦ ଭାଗ ଉତ୍ତର ପ୍ରଦେଶରେ, ୭୮ ଭାଗ ମାନ୍ଦ୍ରାଜରେ, ୯୭ ଭାଗ ବମ୍ବେରେ, ୭୦ ଭାଗ ଓଡ଼ିଶାରେ ଓ ୬୭ ଭାଗ ମଧ୍ୟ-ପ୍ରଦେଶରେ ଏବେ କୃଷି କରାଯାଉଛି । ବାକି ଯାହା ଅଛି ହୁଏତ ସେଥିରେ ଗଛ ଲଗାଇ ଜଙ୍ଗଲ କରିବା କିଂବା ଗାଈ ଗୋରୁଙ୍କ ପାଇଁ ଗୋଚର ହିସାବରେ ଛାଡ଼ିଦେବା ଉଚିତ ହେବ । ଅଧିକ ଜମି କୃଷିକୁ ଆଣିଲେ ମଧ୍ୟ ତୁଳା ଓ ଝୋଟର ଅଭାବ ଯୋଗୁଁ ସେଥିରେ ତୁଳା ଓ ଝୋଟ ଉତ୍ପାଦନ କରିବା ଦରକାର ପଡ଼ିବ । ତା ନ ହେଲେ ଆମର ଲୁଗା ଓ ଝୋଟ ଶିଳ୍ପ ଅକାମୀ ହୋଇଯିବ ଓ ଏହି ଶିଳ୍ପରେ ଆଜି ଯେଉଁମାନେ କାମ କରୁଥିଲେ, ସେମାନଙ୍କୁ ପୁଣି କୃଷିକୁ ଫେରିଯିବାକୁ ପଡ଼ିବ ବା ବେକାର ହୋଇ ଭୋକ ଉପାସରେ ଜୀବନ କାଟିବାକୁ ପଡ଼ିବ । ଏଣେ ଜଣପିଛା ଜମିହାର କମିବା ଫଳରେ କୃଷିରେ ମଧ୍ୟ କାମ ମିଳିବ ନାହିଁ । ମୋଟ ଉପରେ ଜନସଂଖ୍ୟା ଯଦି ଏହିପରି ବଢ଼ି ଚାଲେ, ତା'ହେଲେ ଦିନକୁ ଦିନ ବେକାର ସଂଖ୍ୟା ବଢ଼ି ଚାଲିବ ଓ ଜନସାଧାରଣଙ୍କର ବଞ୍ଚିବା ହାର ନ୍ୟୂନରୁ ନ୍ୟୂନତର ହୋଇ ଉଠିବ । ବର୍ତ୍ତମାନ ତ ଆମର ଅବସ୍ଥା ଗାଆଣି ଗାଇଲେ ନ ସରେ । ଆମର ଜଣପିଛା ବର୍ଷକୁ ଆୟ ମୋଟେ ଟ ୨୫୫୯ । ଯୁଦ୍ଧପୂର୍ବ ଟଙ୍କା ମୂଲ୍ୟ

ହିସାବରେ ତୁଳନାକଲେ ବର୍ଷକୁ ଜଣ ପିଚ୍ଛା ଆୟ ୬୨୦୯ କ ୬୨୫୯ ହେବ । ୧୯୩୧ ରେ ଅର୍ଥନୀତି ଅଧ୍ୟାପକ ଡ଼. କେ. ଆର୍. ଭି. ରାଓ ଜଣପିଚ୍ଛା ଆୟ ଯେତକ ବୋଲି ହିସାବ କରିଥିଲେ, ୨୦ ବର୍ଷ ପରେ ମଧ୍ୟ ତାର କିଛି ପରିବର୍ତ୍ତନ ହୋଇ ନାହିଁ । ଅଥଚ ଇଂଲଣ୍ଡ କ ଆମେରିକାରେ ଜଣପିଚ୍ଛା ଆୟ ଆମଠାରୁ ୨୦।୨୫ ଗୁଣ ଅଧିକ । ଆମ ବଞ୍ଚିବା ପ୍ରଣାଳୀ ତ ସମସ୍ତଙ୍କୁ ଜଣା । ଆମର ଅଧିକାଂଶ ଅଧିବାସୀ ଓ ଅନୁନ୍ନତ ଲୋକ ଗଛର ଚେରମୂଳ ଖାଇ ଅଧା ଲଙ୍ଗଳା ହୋଇ ଚଳନ୍ତି ବୋଲି ଆମକୁ ଗଣ୍ଡେ ଭାତ ଖାଇବାକୁ, ଖଣ୍ଡେ ଲୁଗା ପିନ୍ଧିବାକୁ ମିଳୁଛି । ଯେଉଁଦିନ ସେମାନଙ୍କର ଚେତନା ହେବ ଓ ସେମାନେ ଭାତ ଓ ଲୁଗା ଖୋଜିବେ, ସେଦିନ ସମସ୍ତଙ୍କୁ ଅଧା ଲଙ୍ଗଳା ଓ ଅଧା ଭୋକ ଉପାସରେ ସମୟ କାଟିବାକୁ ପଡ଼ିବ । ତେଣୁ ଏ ଦୁରବସ୍ଥା ସୁଧାରିବାକୁ ହେଲେ ଆମର ଜନସଂଖ୍ୟାକୁ ରୋକିବାକୁ ହେବ ଓ ତା ସଙ୍ଗେ ସଙ୍ଗେ ଅର୍ଥନୈତିକ ପ୍ରଗତି ପାଇଁ ଅନ୍ୟାନ୍ୟ ଯୋଜନା କାର୍ଯ୍ୟକାରୀ କରିବାକୁ ପଡ଼ିବ ।

ଅନେକ ଲୋକ ଭାବୁଛନ୍ତି ଯେ ଜନସଂଖ୍ୟା ଆମ ଆଗରେ ଏକ ବଡ଼ ସମସ୍ୟା ନୁହେଁ । ଏପରିକି ୧୯୪୫ ମସିହା ଦୁର୍ଭିକ୍ଷ ଅନୁସନ୍ଧାନ କମିଟି ପ୍ରତ୍ୟେକ ପ୍ରାଦେଶିକ ସରକାରମାନଙ୍କୁ ଜନବୃଦ୍ଧି ବିଷୟରେ ସେମାନଙ୍କ ମତ ଯେତେବେଳେ ପଚାରି ପଠାଇଲେ, ସେତେବେଳେ ୭ଟି ପ୍ରଦେଶର ସରକାରମାନେ ଆମ ଦେଶରେ ଜନବୃଦ୍ଧି କୌଣସି ରକମ ସମସ୍ୟା ନୁହେଁ ବୋଲି ମତ ପ୍ରକାଶ କରିଥିଲେ । ଅନ୍ୟମାନେ ଅଧାପନ୍ତରିଆ ଭାବରେ ଜନବୃଦ୍ଧିର ଆଲୋଚନା କରିଥିଲେ । ଏହାର କାରଣ ଖୋଜିବାକୁ ବେଶୀଦୂର ଯିବାକୁ ପଡ଼ିବ ନାହିଁ । ସେମାନଙ୍କ ମତରେ ଆମ ଦେଶରେ ଅନେକ

ସମ୍ପତ୍ତି ଅଛି । ଏ ସମ୍ପତ୍ତିକୁ ଉତ୍ତମରୂପେ ବ୍ୟବହାର କରିପାରିଲେ ଆମ ଦେଶରେ ଯେତିକି ଲୋକ ଅଛନ୍ତି ଓ ଯେତେଲୋକ ବଢ଼ୁଛନ୍ତି ଏମାନଙ୍କ ଅବସ୍ଥା ସହଜରେ ଭଲ କରିଯାଇ ପାରିବ । ଆମେ କୋଟି କୋଟି ଟଙ୍କା ଖର୍ଚ୍ଚ କରି ହୀରାକୁଦ, ଦାମୋଦର ପ୍ରଭୃତି ଯୋଜନା ତିଆରି କରୁଛୁ । ୫।୧୦ ବର୍ଷ ଭିତରେ ଏ ଗୁଡ଼ିକ କାର୍ଯ୍ୟରେ ପରିଣତ ହେଲେ, ଲୋକମାନଙ୍କର ଅର୍ଥନୈତିକ ଅବସ୍ଥା ଅନେକ ପରିମାଣରେ ଉନ୍ନତ କରିଯାଇ ପାରିବ । କିନ୍ତୁ ଏ ଦିଗରେ ଯୋଜନା କମିଶନ ଯେଉଁ ମତ ଦେଇଛନ୍ତି, ସେ କଥା ବିଚାର କଲେ ଦେଖାଯିବ ଯେ ଭବିଷ୍ୟତରେ ଜନନିୟନ୍ତ୍ରଣ ନ କରାଗଲେ କୌଣସି ରକମ ଅର୍ଥନୈତିକ ପ୍ରଗତି ସମ୍ଭବ ନୁହେଁ । ଯୋଜନା କମିଶନ ୧୮୦୦ କୋଟି ଟଙ୍କାର ଯେଉଁ ୫ ବର୍ଷିଆ ଯୋଜନା ଗଠନ କରିଛନ୍ତି, ସେଥିରେ ୫ ବର୍ଷ ପରେ ଆମ ଦେଶର ଅବସ୍ଥା ଯୁଦ୍ଧପୂର୍ବ ଅବସ୍ଥା ସଙ୍ଗେ ସମାନ କରିବାକୁ ଚେଷ୍ଟା କରାଯାଉଛି । ଏଥିରୁ ଆମ ଦେଶର ବର୍ତ୍ତମାନ ଅଭାବ ଅସୁବିଧା ପରିସ୍ଥିତି ଜଣାଯାଉଛି । ପାଞ୍ଚବର୍ଷ ପରେ ଆମେ ଜଣ ପିଛା ୧୩.୪ ଗଜ ପରିବର୍ତ୍ତିରେ ୧୫ ଗଜ ଲୁଗା, ୬.୩ ପାଉଣ୍ଡ ଚିନି ପରିବର୍ତ୍ତିରେ ୮.୩ ପାଉଣ୍ଡ ଚିନି, ୧୨ ଆଉନ୍ସ ଚାଉଳ ପରିବର୍ତ୍ତିରେ ୧୪.୫୦ ଆଉନ୍ସ ଚାଉଳ ପାଇଁ ଯେତେବେଳେ ୧୮୦୦ କୋଟି ଟଙ୍କା ଖର୍ଚ୍ଚବିଶିଷ୍ଟ ଯୋଜନା କରୁଛୁ, ସେତେବେଳେ ଆମ ଦେଶର ଧନ ସମ୍ପଦ ପରିସ୍ଥିତି ବୁଝାପଡ଼ୁଛି । ସେଥିପାଇଁ ଯୋଜନା କମିଶନ ସ୍ପଷ୍ଟଭାବରେ କହୁଛନ୍ତି ଯେ ଜନ୍ମ-ନିରୋଧ ଦ୍ୱାରା ଜନବୃଦ୍ଧି ହାର ଯଦି କମା ନ ଯାଏ, ତାହେଲେ ବର୍ତ୍ତମାନର ବଞ୍ଚିବା ହାର କାଏମ୍ ରଖିବାପାଇଁ ଆମକୁ ଅନେକ ଅଧିକା ପରିଶ୍ରମ କରିବାକୁ ପଡ଼ିବ । ତେଣୁ ଯେଉଁମାନେ ଆମର ପ୍ରାକୃତିକ ସମ୍ପଦର ଅଳ

ନ୍ଦଗାର ଜନନିୟନ୍ତ୍ରଣର ଆପତ୍ତି କରୁଛନ୍ତି, ସେମାନେ ବର୍ତ୍ତମାନ ନୀରବ ରହିଥିବା ଉଚିତ।

ଜନନିୟନ୍ତ୍ରଣକୁ ସମାଲୋଚନା କରି ଆଜି କେତେକ ମତ ପ୍ରକାଶ କରନ୍ତି ଯେ ଆମର ଅନେକ ଜାଗାରେ ଲୋକ ବସତି ଖୁବ୍ କମ୍। ଯେଉଁ ଅଞ୍ଚଳରେ ଲୋକବସତି କମ୍, ସେହି ଅଞ୍ଚଳକୁ ଅଧିକା ଲୋକ ପଠାଇ ସମଭାବରେ ଲୋକ ବଣ୍ଟନ କରିଦେଲେ ଜନ୍ମନିରୋଧର ପ୍ରଶ୍ନ ଆସିବ ନାହିଁ। ସେମାନଙ୍କ ମତରେ ଜନ୍ମନିରୋଧ ବ୍ୟବସ୍ଥା ଅବଲମ୍ବନ କଲେ ଭବିଷ୍ୟତରେ ହୁଏତ ଆମକୁ ପସ୍ତାଇବାକୁ ପଡ଼ିବ। ଆଜି ରୁଷିଆ ଦେଶରେ ଜନସଂଖ୍ୟା ବଢ଼ାଇବାକୁ ଯେପରି ଚେଷ୍ଟା କରାଯାଉଛି, ଆମ ଦେଶରେ ଭବିଷ୍ୟତରେ ପୁଣି ବଢ଼ାଇବାର ଉଦ୍ୟମ ହେବ। ଆଜିକାଲିକା ଯୁଦ୍ଧ ପାଇଁ ସୈନ୍ୟସଂଖ୍ୟା ବି ବହୁତ ଦରକାର। ଯେତେବେଳେ ଘରଆଡ଼େ ଯୁଦ୍ଧ ପାଇଁ ଯୋଗାଡ଼ ହେଉଛି ସେତେବେଳେ ଜନସଂଖ୍ୟା କମାଇବା ଦେଶରକ୍ଷା ଦୃଷ୍ଟିରୁ ମଧ୍ୟ କ୍ଷତିକାରକ। କିନ୍ତୁ ଏ ଯୁକ୍ତିରେ କୌଣସି ସତ୍ୟତା ନାହିଁ। ପ୍ରଥମ କଥା ଆମର ଜନବସତି ଖୁବ ଗହଳ। ଜନବସତିର ହିସାବରୁ ଦେଖାଯାଉଛି ଯେ ବଙ୍ଗଳାର ଜନବସତି ୭୭୯, ବିହାରରେ ୫୨୧, ଯୁକ୍ତପ୍ରଦେଶରେ ୫୧୮, ମାନ୍ଦ୍ରାଜରେ ୪୯୧, ପଞ୍ଜାବରେ ୨୮୭, ବମ୍ବେରେ ୨୭୨, ଓଡ଼ିଶାରେ ୨୭୧, ଆସାମରେ ୧୮୬ ଓ ମଧ୍ୟ-ପ୍ରଦେଶରେ ୧୭୦। ଆମର ପ୍ରାକୃତିକ ସଂପଦ, ଶିଳ୍ପ ଓ ବ୍ୟବସାୟକୁ ଦେଖିଲେ ଏହାଠାରୁ ଅଧିକ ଲୋକଙ୍କ ପାଇଁ ବ୍ୟବସ୍ଥା କରିବାର କୌଣସି ସମ୍ଭାବନା ନାହିଁ। ଇଂଲଣ୍ଡର ମଧ୍ୟ ଲୋକସଂଖ୍ୟା ତାଙ୍କ ଦେଶ ଅନୁପାତରେ ଗତ ୮।୧୦ ଭିତରେ ବଢ଼ିଛି। ତେଣୁ ସେମାନେ କୋଟିଏ ବା ଦେଢ଼କୋଟି ଲୋକଙ୍କୁ ଅଷ୍ଟ୍ରେଲିଆ ପଠାଇବା ପାଇଁ ଯୋଗାଡ଼

କରୁଛନ୍ତି । କିନ୍ତୁ ଆମେ କୌଣସି ବିଦେଶ ରାଜ୍ୟକୁ ଆମ ଲୋକଙ୍କୁ ପଠାଇ ପାରିବା ନାହିଁ । ଆମର ଲୋକଙ୍କୁ ନେଇ ଆଫ୍ରିକା, ବର୍ମା, ସିଲୋନ୍ ପ୍ରଭୃତି ଦେଶରେ କଳି ତକରାଳ ଲାଗିଛି । ଦ୍ୱିତୀୟରେ ସାମରିକ ଉଦ୍ଦେଶ୍ୟ ରଖି ଆମେ ଆମର ଜନସଂଖ୍ୟାକୁ ବଢ଼ାଇବା ନୀତି ଦୃଷ୍ଟିରୁ ସଂପୂର୍ଣ୍ଣ ଭୁଲ, କିନ୍ତୁ ନୀତି ଦୃଷ୍ଟିରୁ କଥାକୁ ବିଗ୍ଭର ନ କରି ବାସ୍ତବତା ଅନୁ ବିଗ୍ଭର କଲେ ମଧ୍ୟ ଦେଖାଯିବ ଯେ ଅଜକାଲି ଯୁଗରେ ଜନସଂଖ୍ୟା ବଡ଼ କଥା ନୁହେଁ । ତଥାପି ଜନସଂଖ୍ୟା ଅନୁପାତରେ ବଳ କଷାକଷି ହେଉଥିଲେ ଆମ ସଙ୍ଗରେ ଖାପ ଦେବାକୁ ପୃଥିବୀର ଅନ୍ୟ କୌଣସି ଦେଶ ନାହିଁ । ତେଣୁ ସେ ଦିଗରେ ଅଉ ସମୟ ଓ ଶକ୍ତି ନଷ୍ଟ ନ କରି ଅନ୍ୟ ଜିନିଷ ପ୍ରତି ନଜର ଦିଆଯିବା ଉଚିତ ।

ଜନ ନିୟନ୍ତ୍ରଣ ଆମ ଦେଶରେ ସଫଳ ହୋଇ ପାରିବ ନାହିଁ ବୋଲି ଅନେକ ମଧ୍ୟ ମତ ପ୍ରକାଶ କରନ୍ତି । ସାମାଜିକ ପରଂପରା ଓ ରକ୍ଷଣଶୀଳତାର ଦ୍ୱାହି ଦେଇ ଯେଉଁମାନେ ଜନନିୟନ୍ତ୍ରଣର ବିରୋଧ କରୁଛନ୍ତି, ସେମାନଙ୍କର ବୁଝିବା ଉଚିତ ଯେ ସମାଜ ଜଡ଼ ନୁହେଁ । ସମୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସମାଜର ମଧ୍ୟ ପରିବର୍ତ୍ତନ ହୁଏ । ଯେଉଁମାନେ ଅଶିକ୍ଷିତ ଲୋକ, ସେମାନଙ୍କୁ କଥାଟା ଭଲରିକମ ବୁଝାଇଦେଲେ, ସେମାନେ ନିଶ୍ଚୟ ଉଚିତ କଥା ଧରିନେବେ । ଏ ଦିଗରେ ପ୍ରଥମେ ଉଦ୍ୟମ ଦରକାର । ଦ୍ୱିତୀୟରେ ପେଟର ଦାଉ ଆଗରେ ସାମାଜିକ ପରଂପରା ବଡ଼ ନୁହେଁ । ଅଭାବ ଅନାଟନ ପଡ଼ିଲାବେଳେ ପିତାମାତାମାନେ ଯଦି ତାଙ୍କର ଅତି ଆଦରର ପୁଅଝିଅମାନଙ୍କୁ ଟଙ୍କେ ପଇସେରେ ବିକ୍ରୀ କରି ପାରୁଛନ୍ତି ଓ ଭାଇ ଭାଇ ଭିତରେ କଳହ ସୃଷ୍ଟି ହୋଇ ପାରୁଛି, ସେତେବେଳେ ସେହି ଅଭାବ ଓ ଅନାଟନ ଦୂର କରିବା ପାଇଁ ବାପ ମା ମାନେ

ଜନନନିୟନ୍ତ୍ରଣ କରିବାକୁ ରାଜି ନ ହେବେ କାହିଁକି ? ବରଂ ଜନନ ନିୟନ୍ତ୍ରଣ ହେଲେ ପାରିବାରିକ ସୌହାର୍ଦ୍ଦ୍ୟ ଓ ଅର୍ଥନୈତିକ ସ୍ୱଚ୍ଛଳତା ବଢ଼ିବ । କିନ୍ତୁ ଆମେମାନେ ଏ ଦିଗରେ କୌଣସି ଚେଷ୍ଟା ନ କରି, ଉପରଠାଉରିଆ ଭାବରେ ଜନନନିୟନ୍ତ୍ରଣକୁ ହସରେ ଉଡ଼ାଇ ଦେଉଛୁ । ଦ୍ଵିତୀୟ କଥା ଜନନନିୟନ୍ତ୍ରଣ ସମ୍ପୂର୍ଣ୍ଣ ଜନ୍ମ-ନିରୋଧ ନୁହେଁ । ସନ୍ତାନ ସନ୍ତତି ଚାହିଁବା କିଛି ଗଳ୍ପ କଥା ନୁହେଁ । କେବଳ ଆମ ଦେଶରେ ନୁହେଁ, ପ୍ରତ୍ୟେକ ଦେଶର ବାପମାମାନେ ସନ୍ତାନ ସନ୍ତତି ପାଇଁ ମନ ବଳାନ୍ତି । ଆମର ଗାଁ ଗହଳର ଲୋକମାନେ ଧର୍ମ ଦୃଷ୍ଟିରୁ ବିଚାର କରନ୍ତି—ହୁଏତ ଅନ୍ୟମାନେ ସ୍ନେହର ମାନଦଣ୍ଡରୁ ସନ୍ତାନ ସନ୍ତତି ପାଇଁ ଆଗ୍ରହ ପ୍ରକାଶ କରନ୍ତି । ସେ ଯାହା ହେଉ ଜନନନିୟନ୍ତ୍ରଣ କରି ସମ୍ପୂର୍ଣ୍ଣ ଜନ୍ମନିରୋଧ ପାଇଁ କେହି କହୁ ନାହିଁ । ତାହେଲେ ଏ ଅର୍ଥନୈତିକ ପ୍ରଗତି ବା ସାମାଜିକ ଉନ୍ନତିର ମୂଲ୍ୟ କଣ ? କାହାକୁ ନେଇ ସମାଜ ଓ କାହାପାଇଁ ଅର୍ଥନୈତିକ ପ୍ରଗତି ? ଆଜିଠାରୁ ଯଦି ସମ୍ପୂର୍ଣ୍ଣ ଜନ୍ମ ନିରୋଧ କରାଯାଏ, ତାହେଲେ ବୋଧହୁଏ ୫୦।୬୦ ବର୍ଷ ପରେ ଆମ ଦେଶରୁ ଲୋକ ସଂଖ୍ୟା ଏକାବେଳକେ ଲୋପ ପାଇଯିବେ । ଜନନନିୟନ୍ତ୍ରଣ ଅର୍ଥ ଜୀଅନ୍ତା ଲୋକଙ୍କୁ ମାରିବା ବି ନୁହେଁ । ଜନନନିୟନ୍ତ୍ରଣ ଅର୍ଥ ଜନ୍ମରେ ନିୟନ୍ତ୍ରଣ କରିବା । ଆମର ଅର୍ଥନୈତିକ ସମ୍ପଦକୁ ଚାହିଁ, ଆମର ଯେତିକି ଲୋକ ଦରକାର, ସେତିକି ଲୋକ ଉତ୍ପାଦନ କରିବା; ଆମର ବର୍ତ୍ତମାନ କେତେ ଲୋକ ଦରକାର, ତାହା ବି ନିର୍ଦ୍ଦିଷ୍ଟ କରି କୁହାଯାଇ ପାରିବ ନାହିଁ । ତେବେ ଅନୁମାନରେ ଏତିକି କୁହାଯାଇ ପାରେ ଯେ ବର୍ତ୍ତମାନର ଅର୍ଥନୈତିକ ଅବସ୍ଥାକୁ ଚାହିଁ ଆମର ଅଧିକା ଲୋକ ଅଛନ୍ତି । ତେଣୁ ପ୍ରତ୍ୟେକ ବାପ ମା ଦୁଇ ତିନୋଟି ସନ୍ତାନ ସନ୍ତତି ପାଇଲା ପରେ

ଜନ୍ମନିରୋଧ କରନ୍ତୁ ବୋଲି ଯଦି ପ୍ରଚାର କରାଯାଏ, ତା ହେଲେ ବେଶୀ କିଛି ଅସୁବିଧା ହେବ ନାହିଁ ବୋଲି ଆମର ବିଶ୍ୱାସ । ଭବିଷ୍ୟତରେ ହୁଏତ ଆମର ଧନସମ୍ପଦ ବଢ଼ିଲେ, ଜନନିୟନ୍ତ୍ରଣର ଆବଶ୍ୟକତା ପଡ଼ି ନ ପାରେ । କିନ୍ତୁ ବିଶିଷ୍ଟ ଅର୍ଥନୀତିଜ୍ଞ କେନ୍ସ କହିଲା ପରି ଆମେ ଅର୍ଥନୀତିରେ ବର୍ତ୍ତମାନ କଥା ନେଇ ବିଚାର କରିବା । ଭବିଷ୍ୟତରେ କଣ ହେବ କିଏ ଜାଣେ ?

ଜନନିୟନ୍ତ୍ରଣ ବିରୁଦ୍ଧରେ ଅନ୍ୟ ଏକ ଯୁକ୍ତି ମଧ୍ୟ ଦେଖାଯାଇ ଥାଏ । ପ୍ରସିଦ୍ଧ ନାଟ୍ୟକାର ବର୍ଣ୍ଣାଡ଼ଶ’ଙ୍କ ମତରେ ଜନନିୟନ୍ତ୍ରଣ କରି ଯେଉଁ ଛୁଆର ଜନ୍ମକୁ ଆମେ ନିରୋଧ କରୁଛେ, ସେ ହୁଏତ ସମାଜରେ ଜଣେ ବିଶିଷ୍ଟ ଲୋକ ହୋଇ ପାରିଥାନ୍ତା । ଏ କଥା ସତ ହୋଇ ପାରେ କିନ୍ତୁ ଆମ ଦେଶର ଅନେକ ଲୋକ ସମାଜର ସୁବିଧା ଓ ସୁଯୋଗ ନ ପାଇ ଯେ ବଡ଼ ହୋଇ ପାରୁ ନାହାନ୍ତି, ଏଥିରେ କଣ ସନ୍ଦେହ ଅଛି ? ବଣର ମଲ୍ଲୀ ପରି ବଣରେ ଫୁଟି ମିଳେଇ ଯାଉଛନ୍ତି—ତାଙ୍କର ପତ୍ତା କେହି ପାଉନାହାନ୍ତି । ସେମାନଙ୍କୁ ଉପଯୁକ୍ତ ସୁବିଧା ଓ ସୁଯୋଗ ଦେଲେ, ସେଇମାନଙ୍କ ଭିତରୁ ଆମେ ଅନେକ ବିଶିଷ୍ଟ ଲୋକ ନ ପାଇପାରିବା କାହିଁକି ? ଯେତିକ ଲୋକ ଅଛନ୍ତି ଓ ଯେଉଁ ଛୁଆମାନେ ଜନ୍ମ ହେଉଛନ୍ତି, ଏମାନଙ୍କୁ ଉପଯୁକ୍ତ ସୁଯୋଗ ଦିଆ ଯିବା ପାଇଁ ଜନ୍ମ ନିୟନ୍ତ୍ରଣ ଯେ ଏକ ପ୍ରକାର ବ୍ୟବସ୍ଥା ଏଥିରେ କଣ ସନ୍ଦେହ ଅଛି ? ସ୍ତ୍ରୀମାନଙ୍କର ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଧ୍ୟ ଜନ୍ମନିୟନ୍ତ୍ରଣ ଏକାନ୍ତ ଦରକାର । ଆମ ଦେଶର ସ୍ୱାସ୍ଥ୍ୟର ଅବସ୍ଥା ଯାହା ଓ ସ୍ତ୍ରୀଲୋକମାନେ ଗୋଟିଏ ଦୁଇଟି ସନ୍ତାନ ଜନ୍ମ କରିସାରିଲା ପରେ ଯେପରି ରୁଗ୍ଣ ଓ ଦୁର୍ବଳ ହୋଇ ପଡ଼ନ୍ତି, ସେପରି ଅବସ୍ଥାରେ ଜନନିୟନ୍ତ୍ରଣ କରି କେତେକାଂଶରେ

ଜନ୍ମନିରୋଧ କଲେ ସ୍ତ୍ରୀ ଓ ପିଲାମାନଙ୍କର ସ୍ୱାସ୍ଥ୍ୟର ଯେ ଉନ୍ନତି ହେବ, ଏଥିରେ କଣ ସନ୍ଦେହ ଅଛି ?

କେତେକଙ୍କ ମତରେ ଆମ ଓଡ଼ିଶାରେ ଜନ୍ମନିୟନ୍ତ୍ରଣର ଆବଶ୍ୟକତା ନାହିଁ ବୋଲି କୁହାଯାଏ । ତାର କାରଣ ଯେ ଗତ ୧୦ ବର୍ଷ ଭିତରେ ଆମର ଲୋକସଂଖ୍ୟା ଶତକରା ମୋଟେ ୨ ବଢ଼ିଛି । କିନ୍ତୁ ଏହି ହିସାବ ନେଇ ଖୁସି ହେବାର କିଛି କାରଣ ନାହିଁ । ଆମମାନଙ୍କ ମତରେ ଓଡ଼ିଶାର ମୃତ୍ୟୁହାର ବୋଧହୁଏ ସବୁ ପ୍ରଦେଶଠାରୁ ଅଧିକ । ଜନ୍ମହାର ଓ ମୃତ୍ୟୁହାର ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନାହିଁ । ମୃତ୍ୟୁହାର ପ୍ରକାଶ ପାଇଥିଲେ, ଗତ ୧୦ ବର୍ଷ ଭିତରେ ଜନସଂଖ୍ୟା କାହିଁକି ଶତକରା ୨ ବଢ଼ିଛି, ଜଣା ପଡ଼ି ଯାଇଥାନ୍ତା । ସେ ଯାହା ହେଉ ଏକଥା ସତ ଯେ ଆମ ପ୍ରଦେଶର ଅର୍ଥନୈତିକ ଅବସ୍ଥା ସବୁଠାରୁ ଖରାପ । ଆମର ଜଣପିଛା ଆୟ ଅନ୍ୟାନ୍ୟ ପ୍ରଦେଶଠାରୁ କମ । ଆମର ଶତକରା ୮୦ ଲୋକ କୃଷି ଉପରେ ନିର୍ଭର କରନ୍ତି । ତେଣୁ ବର୍ଷର ୬ ମାସ ବେକାର । ଜମିର ଉତ୍ପାଦିକା ଶକ୍ତି ମଧ୍ୟ ଅନ୍ୟ ପ୍ରଦେଶଠାରୁ କମ । ତେଣୁ ଫସଲ ହିସାବରେ ଆୟ କମ । ଗତ ୩୫ ବର୍ଷ ଭିତରେ ଦୁଇ ତିନୋଟି ଶିଳ୍ପ ମୁଣ୍ଡ ଟେକି ଉଠିଛି, ମୋଟ ଉପରେ ଶତକରା ୧୦ ଶିଳ୍ପ ଓ ବ୍ୟବସାୟ ଉପରେ ନିର୍ଭର କରି ଚଳନ୍ତି । ଉପତ୍ୟକା ଅଞ୍ଚଳରେ ଜନବସତି ଖୁବ୍ ଅଧିକ, ମାଇଲ୍ ପିଛା ୪୫୦ । ଆମର ଅର୍ଥନୀତିକୁ ଚାହିଁଲେ, ଏତେ ଲୋକଙ୍କ ପାଇଁ ବ୍ୟବସ୍ଥା କରିବା ଅତି କଷ୍ଟ । ଅବଶ୍ୟ ପୂର୍ବତନ ଗଡ଼ଜାତ ଓ କୋରାପୁଟ ପ୍ରଭୃତି ଅଞ୍ଚଳରେ ଅନେକ ଖାଲି ଜାଗା ଅଛି । ସେ ସବୁ ଅଞ୍ଚଳକୁ ଉପତ୍ୟକା ଅଞ୍ଚଳରୁ ଲୋକ ପଠାଇ ପାରିଲେ, ଜନଗହଳି ଅନେକ କମିଯାନ୍ତା । କିନ୍ତୁ ଆମର ଲୋକମାନେ ଯେପରି, ସେପରି ଅବସ୍ଥାରେ

ନିଜ ଗାଁ ଘରଦ୍ୱାର ଓ ବନ୍ଧୁ ବାନ୍ଧବ ଛାଡ଼ି ଜଙ୍ଗଲ ଜାଗାକୁ ଯିବା ସହଜ ନୁହେଁ । ତଥାପି ଏ ଦିଗରେ ଚେଷ୍ଟା କରାଯାଇ ପାରେ । ତଥାପି ମଧ୍ୟ ଆମର ଅର୍ଥନୀତିକୁ ମଜବୁତ କରିବା ପାଇଁ ଜନ-ନିୟନ୍ତ୍ରଣ ଓ ଅର୍ଥନୈତିକ ଯୋଜନା ଦରକାର ।

ଆମର ଅଭାବ ଅସୁବିଧା ମଧ୍ୟ ଜନନିୟନ୍ତ୍ରଣରେ ଅସୁବିଧା ସୃଷ୍ଟି କରିବ ବୋଲି ଅନେକ ମତ ପ୍ରକାଶ କରୁଛନ୍ତି । ଯେଉଁମାନେ ଘଣ୍ଟେ ଖାଇବାକୁ ଓ ଖଣ୍ଡେ ଲୁଗା ପିନ୍ଧିବାକୁ ପଇସା ପାଉ ନାହାନ୍ତି, ସେମାନେ ପଇସା ଦେଇ ଜନ୍ମନିୟନ୍ତ୍ରଣର ଯନ୍ତ୍ରପାତି କିଣିବା ସହଜ ନୁହେଁ । ପୁଣି ଅଧିକାଂଶ ଅଶିକ୍ଷିତ ଥିବାରୁ କିପରି ଜନ୍ମନିୟନ୍ତ୍ରଣ ଔଷଧ ବା ଯନ୍ତ୍ରପାତି ବ୍ୟବହାର କରିବାକୁ ହେବ ଜାଣିପାରିବେ ନାହିଁ । ଏ ଦିଗରେ ସରକାରୀ ଉଦ୍ୟମ ଅବଶ୍ୟ ଦରକାର । ମାଗଣା ଯନ୍ତ୍ରପାତି ବାଣ୍ଟିବା ଓ ଜନ୍ମନିୟନ୍ତ୍ରଣ କେନ୍ଦ୍ର ଖୋଲି ସେ ବିଷୟରେ ଶିକ୍ଷା ଦେବାପାଇଁ ସରକାରୀ ଉଦ୍ୟମ ନ ହେଲେ, ଜନ୍ମନିୟନ୍ତ୍ରଣ ସଫଳ ହୋଇ ପାରିବ ନାହିଁ । କିନ୍ତୁ ଯେଉଁମାନଙ୍କ ହାତରେ ପଇସା ଅଛି, ସେମାନଙ୍କ ପାଇଁ ଖାଲି ପ୍ରଚାର ଦରକାର । ଶିକ୍ଷିତ ଲୋକମାନେ ଏ ଦିଗରେ ବ୍ୟାପକ ଉଦ୍ୟମ କରିବା ଉଚିତ ।

---

# ଜନ୍ମ ନିରୋଧ ଲାଗି ମନସ୍ତାତ୍ତ୍ୱିକ ପ୍ରସ୍ତୁତି

ଡକ୍ଟର ରାଧାନାଥ ରଥ

ସନ୍ତାନ ସନ୍ତତି ବିନା ପାରିବାରିକ ଜୀବନ ଯେପରି ଶ୍ରୀହୀନ ହୋଇପଡ଼େ ଦାମ୍ପତ୍ୟ ଜୀବନ ମଧ୍ୟ ସେହିପରି ତିକ୍ତ ହୋଇଉଠେ । ଛୁଆ ପିଲା ନ ଥିଲେ ବାପମାଙ୍କର ମନରେ ସୁଖ ନ ଥାଏ ଏବଂ ବିବାହର ଏହା ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ବୋଲି ଧରାଯାଇଥାଏ । ବିଶେଷତଃ ଆମ ଦେଶରେ ଅନେକେ ସନ୍ତାନ ଜନ୍ମହିଁ ବିବାହର ଏକମାତ୍ର ଲକ୍ଷ୍ୟ ଓ ଯୌନ ସମ୍ଭୋଗସୁଖ ଗୌଣ ବୋଲି ମନେ କରିଥାଆନ୍ତି । ପୁରୁଣାକାଳିଆ ଲୋକେ ଯେତେ ଗରିବ ହୁଅନ୍ତୁ ପଛକେ ଏବଂ ବହୁ ପିଲାପିଲି ଯୋଗୁଁ ନ ଖାଇ ଅଧା ଉପବାସରେ ରହୁଥିଲେ ସୁଦ୍ଧା ପୁଅଝିଅ ବେଶୀ ହେଲେ ନିଜକୁ ଭାଗ୍ୟବାନ୍ ମନେ କରନ୍ତି । ଅବଶ୍ୟ ଏମାନେ ବଡ଼ ହୋଇ ରୋଜଗାର କରି ପାରିଲେ ପରିବାରର ଭାଗ୍ୟ ବଦଳି ଯାଇପାରେ କିନ୍ତୁ ପ୍ରଥମରୁ ଯେ କେତେ କଷ୍ଟ ସହିବାକୁ ପଡ଼େ ସେ ବିଷୟରେ ସଚେତ ଥିଲେ ମଧ୍ୟ ଅନେକ ଚାହାଁନ୍ତି ନାହିଁ ଯେ ସନ୍ତାନ କମ ହୁଅନ୍ତୁ । ତାଛଡ଼ା ସାମାଜିକ ପରମ୍ପରା ଏପରି ଯେ ଆଜି ଅଧିକା ପୁଅ ଝିଅ ନ ହେଉ ଏ ଚିନ୍ତା କରିବା ଲୋକଙ୍କ ପକ୍ଷରେ ମହାପାପଜନକ ବୋଲି ବିବେଚିତ ହୋଇଥାଏ । ଦ୍ୱିତୀୟରେ ଆମ ଦେଶରେ ଏତେ ପ୍ରକାର ସଂକ୍ରାମକ ରୋଗ ଓ ମାରାତ୍ମକ ବ୍ୟାଧି ଲାଗି ରହିଥାଏ ଏବଂ ଲୋକମାନଙ୍କୁ ଘାରି ଏତେ ପିଲା ଓ ଯୁବକ ମରି ପଡ଼ନ୍ତି ଯେ ଗୋଟିଏ ଦୁଇଟି ପିଲାନେଇ ନିଶ୍ଚିନ୍ତଭାବରେ ପାରିବାରିକ ଜୀବନ ଚଳାଇ ପାରିବା ଭଳି ସାହସ ଖୁବ୍ କମ ଲୋକଙ୍କର ହେବା ସ୍ୱାଭାବିକ । ଅକାଳ ମୃତ୍ୟୁ ଜନିତ ଅନିଶ୍ଚିତତା ଅନେକ ସମୟରେ ଆମ ଦେଶର ବାପମାଙ୍କର ମନକୁ ଚିନ୍ତାଗ୍ରସ୍ତ ଓ ଉଦ୍ବିଗ୍ନ କରି ରଖିଥାଏ ।

ତା ଫଳରେ ପ୍ରତ୍ୟେକ ବାପମାଙ୍କର ଅଚେତନ ମନରେ ଏପରି ଗୋଟିଏ ଭୟ ଓ ଆଶଙ୍କା ରହିଥାଏ ଯେ, ସହଜରେ ସେମାନେ ସାହସ କରି ଇଚ୍ଛା କରିପାରନ୍ତିନି ତାଙ୍କର କମ୍ ପୁଅ ଝିଅ ହୁଅନ୍ତୁ । ବେଶୀ ଛୁଆ ପିଲା ନେଇ ହଇରାଣ ହେଉଥିବା ମା ମାନଙ୍କ ପାଟିରୁ ସାମାନ୍ୟ ଟିକିଏ ଅମଙ୍ଗଳ କଥା ବାହାରି ପଡ଼ିଲେ ବୁଢ଼ାବୁଢ଼ୀମାନେ ସହ୍ୟ କରି ପାରନ୍ତି ନାହିଁ । ମା ମାନେ ମଧ୍ୟ ସାଙ୍ଗେ ସାଙ୍ଗେ ଜିଭ କାମୁଡ଼ି ମା ଠାକୁରାଣୀ ଓ ଷଠୀ ବୁଢ଼ି ଆଗରେ କ୍ଷମା ପ୍ରାର୍ଥନା କରି ନିଅନ୍ତି । ବେଶୀ ପିଲାପିଲି ଜନ୍ମକରିବା ଇଚ୍ଛା ପଛରେ ଏ ପ୍ରକାର ନାନା ରକମର ମାନସିକ ଉଦ୍‌ବେଗ, ସାମାଜିକ ଓ ଧର୍ମଗତ ବିଶ୍ୱାସ ଓ କୁସଂସ୍କାର ଜନିତ ଭୟ କାମ କରୁଥାଏ । ତେଣୁ ଜନ୍ମନିୟନ୍ତ୍ରଣ କରିବା ପୂର୍ବରୁ ପ୍ରଥମେ ଏ ସମ୍ବନ୍ଧରେ ଯେଉଁ ଧାରଣା ସବୁ କାମ କରୁଛି ତାକୁ ବଦଳାଇବା ସାଙ୍ଗେ ସାଙ୍ଗେ ସାମାଜିକ ପରିସ୍ଥିତି ମଧ୍ୟ ଏପରି ଭାବରେ ତିଆରି ହେବା ଉଚିତ ଯେ ଲୋକଙ୍କ ଭିତରେ ଯେପରି ଅକାଳ ମୃତ୍ୟୁ ଆଶଙ୍କା ଜନିତ ଗଭୀର ଉଦ୍‌ବେଗ ଓ ସନ୍ତାନହୀନ ହେବାର ପ୍ରବଳ ଭୟ କମି ଆସିବ । ଦ୍ୱିତୀୟତଃ ବହୁ କୁଟୁମ୍ବୀ ହେଲେ କି ଭୟଙ୍କର କୁଫଳ ଦେଖାଯାଏ ଓ ସମାଜର ବହୁତ କ୍ଷତି ସାଧିତ ହୁଏ ସେ ବିଷୟରେ ମଧ୍ୟ ସେମାନଙ୍କୁ ସଚେତ କରାଇ ଦେବା ଉଚିତ । ତୃତୀୟରେ କି ଉପାୟରେ ଯୌନ ସୁଖ ସମ୍ଭୋଗରେ କୌଣସି ବାଧା ନ ଆସି ଜନ୍ମନିୟନ୍ତ୍ରଣ କରି ହେବ ଏବଂ କୌଣସି ମାନସିକ କିମ୍ବା ଶାରୀରିକ ଅତୃପ୍ତି ନ ହୋଇ କିପରି ଏହା ସମ୍ଭବ ହୋଇ ପାରିବ ସେଥିଲାଗି ଉପଯୁକ୍ତ ଶିକ୍ଷା ଦିଆ ହେବା ଉଚିତ ।

ଗରିବ ହେଉ ବା ଧନୀ ହେଉ ବହୁ ଛୁଆପିଲାଥିବା ପରିବାରରେ ନାନା ପ୍ରକାର ବିଭ୍ରାଟ ଦେଖାଯାଏ । ଯେତେ ଟଙ୍କା ପଇସା ଥିଲେ ମଧ୍ୟ ବହୁ ପୁଅ ଝିଅର ମା ବାପମାନଙ୍କ ପକ୍ଷରେ ପ୍ରତ୍ୟେକ ସନ୍ତାନପ୍ରତି ଉପଯୁକ୍ତ ଦୃଷ୍ଟି ଦେବା ସମ୍ଭବ ନୁହେଁ । ଟଙ୍କା ଥିଲେ ବହୁ ନର୍ସ, ଗୃକର ରଖା ଯାଇପାରେ କିନ୍ତୁ ବାପମାଙ୍କର ସ୍ନେହପୂର୍ଣ୍ଣ ଦୃଷ୍ଟି ସମସ୍ତଙ୍କ ପ୍ରତି ସମାନ ଭାବରେ ରହିପାରେ ନା । ଫଳରେ ପିଲାଙ୍କ ଭିତରେ ନାନାପ୍ରକାର ଅସ୍ୱାଭାବିକ ଈର୍ଷା ଓ ଉଦ୍‌ବେଗ ଦେଖାଯାଏ । ଅନେକ ସମୟରେ ବହୁ କୁଟୁମ୍ବୀ ପରିବାର ଭିତରୁ ଅନେକ ପିଲା ନାନା ଅସାମାଜିକ କାର୍ଯ୍ୟରେ ଲିପ୍ତ ଥିବାର ମଧ୍ୟ ଦେଖାଯାଏ । ଏକମାତ୍ର ସନ୍ତାନ ଥିବା ପରିବାରରେ ଯେପରି ମନୋବିଜ୍ଞାନ ଦୃଷ୍ଟିରୁ ସେହି ସନ୍ତାନର ଉପଯୁକ୍ତ ମାନସିକ ବିକାଶ ହୋଇ ପାରେନା ଓ ସେପରି ପିଲାଠାରେ ନାନାପ୍ରକାର ଅସ୍ୱାଭାବିକ ଓ ଅସାମାଜିକ କାର୍ଯ୍ୟକଳାପ ଦେଖା ଦେବାର ସମ୍ଭାବନା ଥାଏ ବହୁ ଛୁଆପିଲା ଥିବା ପରିବାରରେ ମଧ୍ୟ ସେହିପରି ବିପଦ ରହିଛି । ଅସାମାଜିକ କାର୍ଯ୍ୟରେ ବ୍ୟାପୃତ ଥିବା ଅପରାଧୀଙ୍କ ଭିତରୁ ଅଧିକାଂଶ ବହୁ ଭାଇ ଭଉଣୀ ଥିବା ବଡ଼ ପରିବାରରୁ ଆସିଥିବାର ଜଣାଯାଏ । ଗରିବ ଘର କଥା ତ ସହଜେ ଅନୁମେୟ—ଖାଇବା ପିଇବାଠୁଁ ଆରମ୍ଭକରି ପ୍ରତ୍ୟେକ କଥାରେ ସମସ୍ତଙ୍କୁ ବହୁ ହଇରାଣ ହେବାକୁ ପଡ଼େ । ଆମ ଦେଶରେ ବହୁ ସନ୍ତାନର ବାପମାଙ୍କର ଆର୍ଥିକ ଓ ପାରିବାରିକ ଦୁରବସ୍ଥା ବିଷୟରେ ବେଶୀ କହିବା ଅନାବଶ୍ୟକ । ଆମର ଭିତରୁ ଅଧିକାଂଶ ତାହା ଅନୁଭବ କରି ପାରୁଥିବେ କିନ୍ତୁ ମନୋବିଜ୍ଞାନ ଦୃଷ୍ଟିରୁ ଯେ କି ଭୟଙ୍କର କ୍ଷତି ହେଉଛି ତାହା ହୁଏତ ଅନେକେ ହୃଦୟଙ୍ଗମ କରିପାରନ୍ତି ନାହିଁ ।

ଭାରତବର୍ଷ କି ହୃତ ଦେଢ଼ ବର୍ଷ ବା ଦୁଇ ବର୍ଷରେ ଥରେ ଲେଖାଏଁ ଛୁଆ ଜନ୍ମ କଲେ ମାଆର ଦୈହିକ ଶକ୍ତି କମିଯାଏ । ଆମ ଦେଶର ପୁଷ୍ଟିସାର ଜୀବସାର ପ୍ରଭୃତି ଖାଦ୍ୟର ଅଭାବ ଯେପରି ସେଥିରେ ଏପରି ଜନ୍ମ କରୁଥିବା ମାଆର ଅବସ୍ଥା ସହଜରେ ଅନୁମେୟ । ମାଆର ସ୍ୱାସ୍ଥ୍ୟ ହାନି ଓ ଅକାଳ ମୃତ୍ୟୁର ସମ୍ଭାବନା ବଢ଼ିବା ସଙ୍ଗେ ସଙ୍ଗେ ଦୁର୍ବଳ ଓ ରୁଗ୍ଣ ଶିଶୁ ସଂଖ୍ୟା ମଧ୍ୟ ବଢ଼ିଥାଏ । ଦୁର୍ବଳତା ଯୋଗୁଁ ମାଆର ନାନାପ୍ରକାର ଶାରୀରିକ ଓ ମାନସିକ ପ୍ରତିକ୍ରିୟା ଦେଖାଯାଏ ଏବଂ ପିଲା ଗର୍ଭରେ ଥିବା ସମୟରୁ ମଧ୍ୟ କେତେଗୁଡ଼ିଏ ଦୈହିକ ଓ Glandular (ଗ୍ରନ୍ଥିଗତ) ଦୋଷ ହାସଲ କରିଥାଏ । ଜନ୍ମହେଲା ପରେ ମଧ୍ୟ ମାଆଠାରୁ ଉପଯୁକ୍ତ ମନୋଯୋଗ ସହିତ ପରିଚର୍ଯ୍ୟା ପାଇ ନ ପାରିବା ଫଳରେ ଶିଶୁଠାରେ ନାନାପ୍ରକାର ଶାରୀରିକ ଓ ମାନସିକ ଜଟିଳତା ଦେଖାଦିଏ । ଶିଶୁର ମନ ପିଲାଦିନରୁ ଉପଯୁକ୍ତ ଭାବରେ ବିକଶିତ ହୋଇ ନ ପାରିବାରୁ ସେ ବଳିଷ୍ଠ ମନୋଭାବ ଓ ଉତ୍ସାହ ସହିତ ସମାଜରେ ଠିଆ ହୋଇ ପାରେ ନାହିଁ ।

ମନୋବିଜ୍ଞାନ ସଂବନ୍ଧୀୟ ଜଟିଳତା ଛାଡ଼ିଦେଲେ ମଧ୍ୟ ଯେଉଁ ବାପ ମା ନିଜ ଛୁଆମାନଙ୍କୁ ଭଲକରି ଗଣ୍ଡିଏ ଖାଇବାକୁ ଦେଇପାରିବାରେ ଅସମର୍ଥ—ଦେହ ଖରାପ ହେଲେ ଔଷଧ ଟୋପାଏ ଦେବାକୁ ସେମାନଙ୍କର ଶକ୍ତି ନାହିଁ କି ଉପଯୁକ୍ତ ଶିକ୍ଷା ଦେବାର ସାମର୍ଥ୍ୟ ନାହିଁ ସେପରି ବାପମାଙ୍କର କି ନୈତିକ ଅଧିକାର ଅଛି ପ୍ରତିବର୍ଷ ଗୋଟିଏ ଗୋଟିଏ ପିଲା ଜନ୍ମକରି ସେମାନଙ୍କୁ ଜୀବନସାରା ନାରକୀୟ ଯନ୍ତ୍ରଣା ଭିତରକୁ ଜାଣିଶୁଣି ଠେଲିଦେବା ? ଏପରି ସନ୍ତାନମାନେ ନିଜର ସୃଷ୍ଟିଲାଗି ବାପମାଙ୍କଠାରେ କଦାପି କୃତଜ୍ଞ ରହିପାରିବେ ନାହିଁ । ସଚେତନ ମନରେ ବାପମାଙ୍କ ବିରୁଦ୍ଧରେ

ଏ ପ୍ରକାର ଘୃଣା ଓ ତିକ୍ତତା ପୋଷଣ ନ କଲେ ସୁଦ୍ଧା ଅଚେତନ ମନରେ ତୀବ୍ର ଘୃଣା ଥିବା ଫଳରେ ପ୍ରକାରାନ୍ତରେ ଏହା ବହୁ ବିଷମଫଳ ସୃଷ୍ଟି କରେ । ବାପମାଙ୍କ ବିରୁଦ୍ଧରେ ନ ଯାଇ ପାରି ଶିକ୍ଷକ, ନେତା, ଦେଶର ସରକାର ତଥା ସାରା ସମାଜ ବିରୁଦ୍ଧରେ ଏ ପ୍ରକାର ବିଦ୍ରୋହ ତୀବ୍ର ଆକାରରେ ଦେଖା ଦେଇଥାଏ ଓ ଦେଶରେ ଅରାଜକତା ସୃଷ୍ଟି ହୁଏ, କାରଣ ଏଗୁଡ଼ିକ ବାପମାଙ୍କର ପ୍ରତିନିଧି ସ୍ୱରୂପ ।

ଅଚେତନ ମନର ଜଟିଳ କ୍ରିୟା ପ୍ରକ୍ରିୟାର ଫଳାଫଳ ବିଷୟରେ ବିଚାର ନ କରି ସାଧାରଣ ମାନବୋଚିତ ନୈତିକ ଦୃଷ୍ଟିକୋଣରୁ ଦେଖିଲେ ମଧ୍ୟ ଆମଦେଶର ବର୍ତ୍ତମାନ ପରିସ୍ଥିତିରେ ବହୁ ଛୁଆପିଲା ଜନ୍ମ କରିବା ଯେ ନିହାତି ଗର୍ହିତ ଏଥିରେ ବୋଧହୁଏ କାହାର ସନ୍ଦେହ ନାହିଁ, କିନ୍ତୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଯେ ଏ ଜଟିଳ ସମସ୍ୟାର ସମାଧାନ ହେବ କିପରି ?

ଅଧିକାଂଶ ଏକମତ ହେବେ ଯେ କମ ଛୁଆପିଲା ଜନ୍ମହୋଇ ସୁସ୍ଥ ସବଳ ଅବସ୍ଥାରେ ଉପଯୁକ୍ତ ଶିକ୍ଷା ପାଇ ବଳିଷ୍ଠ ନାଗରିକ ହିସାବରେ ଜୀବନ ଧାରଣ କରିବା ଉଚିତ । କେତେକ ଅର୍ଥନୀତିଜ୍ଞ ମନେ କରନ୍ତି ଯେ ବହୁ ପରିମାଣରେ ଜନସଂଖ୍ୟା ବୃଦ୍ଧିପାଇଲେ ଖାଦ୍ୟଦ୍ରବ୍ୟର ଅଭାବ ପଡ଼ିବା ସ୍ୱାଭାବିକ । ଫଳରେ ଅନେକ ଲୋକ ଦୁର୍ଭିକ୍ଷ, ଅନାହାର, ମହାମାରୀ ପ୍ରଭୃତି ବିପର୍ଯ୍ୟୟ ଯୋଗୁଁ ଅପେ ଅପେ ଲୋପ ପାଇଯିବେ ଏବଂ ଅବଶିଷ୍ଟାଂଶ କିଛିକାଳ ପୁଣି ସୁଖ ସ୍ୱାଚ୍ଛନ୍ଦ୍ୟରେ ବଞ୍ଚି ଯାଇ ପାରିବେ । ପ୍ରାକୃତିକ ଜଗତର ଅଚେତନ ପ୍ରାଣୀମାନଙ୍କ ଭିତରେ ଅତ୍ୟଧିକ ବୃଦ୍ଧି ଦେଖା ଦେଲେ ଯେପରି ଦଳଦଳ ହୋଇ ଅକାଳ ମୃତ୍ୟୁରେ ଲୋପ ପାଇ ଯାଆନ୍ତି ସେହିପରି ମନୁଷ୍ୟ ସମାଜରେ ଘଟିବା ଅସ୍ୱାଭାବିକ ନୁହେଁ । ତେବେ ପ୍ରାକୃତିକ

ଶକ୍ତିର ଅସାଧାରଣ ନିୟାମକ ଭାବରେ କୃତିତ୍ୱ ଲାଭ କରିଥିବା ସଚେତନ ମନୁଷ୍ୟକୁ ମଧ୍ୟ କଣ ସେହି ପ୍ରାକୃତିକ ଜଗତର ନିଦାରୁଣ ନିୟମ ଭିତରେ ଯନ୍ତ୍ରପରି ଗୁଳିବାକୁ ପଡ଼ିବ, ନା ନିଜର ଅଭି ଜନିତ ବୁଦ୍ଧି ଓ ବୈଜ୍ଞାନିକ ଜ୍ଞାନ ଓ ଅଭିଜ୍ଞତା ସାହାଯ୍ୟରେ ଅନ୍ୟ କ୍ଷେତ୍ରରେ ନିଜର ଭାଗ୍ୟ ସୃଷ୍ଟି କଲାପରି ଏ କ୍ଷେତ୍ରରେ ମଧ୍ୟ ନିଜର ସାମାଜିକ ଜୀବନକୁ ସୁନିୟନ୍ତ୍ରିତ କରି ପାରିବ ? ବର୍ତ୍ତମାନ ଯୁଗରେ ମନୁଷ୍ୟ ଯେ ବିନା କଷ୍ଟରେ ଜନ୍ମକୁ ନିଜ ଇଚ୍ଛାଧୀନକରି ସାମାଜିକ ଜୀବନକୁ ନିୟନ୍ତ୍ରଣ କରି ପାରିବ ଏଥିରେ ସନ୍ଦେହ ନାହିଁ । ପ୍ରକୃତିର ଦୟା ଉପରେ ନିର୍ଭର ନ କରି ନିଜ ଇଚ୍ଛା-ନୁସାରେ ପ୍ରକୃତିକୁ ପରିଗ୍ଳାଳିତ କରିପାରିବାର କ୍ଷମତା ମନୁଷ୍ୟର ଅଛି ଏବଂ ଏଥିରେହିଁ ତାର ପ୍ରକୃତ ମହତ୍ତ୍ୱ, ମାନବିକ ଗର୍ବ, ସାମାଜିକ ସଭ୍ୟତା ଓ କୃଷ୍ଟି ପ୍ରକାଶ ପାଇଛି । ବିଜ୍ଞାନ ସାହାଯ୍ୟରେ ଖାଦ୍ୟଦ୍ରବ୍ୟ ବଢ଼ାଇବା ସାଙ୍ଗେ ସାଙ୍ଗେ ଯେତିକି ମନୁଷ୍ୟ ହେଲେ ଜୀବନ ସ୍ୱଚ୍ଛନ୍ଦରେ ଚଳିପାରିବ ସେଥିପ୍ରତି ଦୃଷ୍ଟି ରଖିଲେ ପ୍ରକୃତିର ନିର୍ମମ ନିୟମର ଆଶ୍ରୟ ନେବାକୁ ପଡ଼ିବ ନାହିଁ ।

ବର୍ତ୍ତମାନ ଆଲୋଚନା କରିଯାଉ ଯେ କେତୋଟି ଛୁଆପିଲା ନେଇ ଗୋଟିଏ ପରିବାର ଗଠିତ ହେବା ଉଚିତ । ଆଗରୁ ଲୁହାଯାଇଛି ଯେ ଯେତେ ଟଙ୍କା ପଇସା ଥିଲେ ସୁଦ୍ଧା ଏବଂ ଯେତେ ଗୁଣର ଗୁଣରାଶୀ ରଖାହେଲେ ସୁଦ୍ଧା ବହୁତ ଛୁଆପିଲାର ପରିବାର ମନୋରଞ୍ଜନ ଦୃଷ୍ଟିରୁ ଆଦୌ ହିତକର ନୁହେଁ । ସେହିପରି ବାପ-ମାଙ୍କର ଏକମାତ୍ର ସନ୍ତାନ ଥିବା ପରିବାର ମଧ୍ୟ ସନ୍ତାନ ପକ୍ଷରେ ଭଲ ନୁହେଁ । ଏହି ସନ୍ତାନଟି ସମସ୍ତଙ୍କଠାରୁ ଅତ୍ୟଧିକ ଆଦର ଓ ସ୍ନେହ ପାଏ ଏବଂ ତା ସହିତ ଅନ୍ୟ ଭାଇ ଭଉଣୀ ନ ଥିଲେ ସେ ବେଶୀ ସ୍ୱାର୍ଥପର ଓ ଜିଦ୍‌ଖୋର ହୋଇଯାଏ ଏବଂ ବଡ଼ ହେଲେ

ଅଯଥା ଗର୍ଭିଣ ଓ ଅସହ୍ରସ୍ଥ ହେବାର ସମ୍ଭାବନା ଅଛି । ତାଛଡ଼ା ପ୍ରାକୃତିକ ଦୁର୍ଘଟଣା ତ ଅଛି; ତେଣୁ ଗୋଟିଏ ସନ୍ତାନ ହେବା ବାଞ୍ଛନୀୟ ନୁହେଁ । ଏକାଧିକ ସନ୍ତାନ ନିତାନ୍ତ ଦରକାର । ୟୁରୋପରେ ଦୁଇ ବା ତିନୋଟି ସନ୍ତାନ ଥିବା ପରିବାରକୁ ଆଦର୍ଶ ପରିବାର ବୋଲି ଧରାଯାଇ ଥାଏ । ସେମାନଙ୍କର ଶିଶୁମୃତ୍ୟୁ ସଂଖ୍ୟା ଶତକଡ଼ା ୮ରୁ, ତେଣୁ ୨ କିମ୍ବା ୩ଟି ସନ୍ତାନ ଥିବା ବାପମାଙ୍କୁ ବିଶେଷ ଉଦ୍‌ବିଗ୍ନ ହେବାକୁ ପଡ଼େ ନା । କିନ୍ତୁ ଆମ ଦେଶରେ ଶିଶୁ-ମୃତ୍ୟୁ ଶତକଡ଼ା ପ୍ରାୟ ୧୬, ତେଣୁ ଆମର ୩ କିମ୍ବା ୪ଟି ସନ୍ତାନ ହେଲେ ଚଳିବ । ପରିବାରରେ ସନ୍ତାନ ସଂଖ୍ୟା ଛଡ଼ା ପରସ୍ପର ଭିତରେ ବୟସର ତାରତମ୍ୟ ପ୍ରଶ୍ନ ଆଉ ଗୋଟିଏ ପ୍ରଧାନ ବିଷୟ । ମନୋରଞ୍ଜନ ତଥା ମାଆର ସ୍ୱାସ୍ଥ୍ୟ ଦୃଷ୍ଟିରୁ ଦୁଇ ଛୁଆ ଭିତରେ ଦୁଇ ବର୍ଷରୁ କମ ତଫାତ୍ ରହିବା ଉଚିତ ନୁହେଁ—ଦୁଇ ତିନିବର୍ଷରୁ ବେଶୀ ତଫାତ୍ ରହିଲେ ସେମାନଙ୍କ ଭିତରେ ସହଜରେ ବନ୍ଧୁତା ହୋଇ ପାରେନା, ତେଣୁ ସେମାନେ ଏକାଠି ଖେଳି ବୁଲି ପାରନ୍ତି ନାହିଁ । ତେଣୁ ଦୁଇ ଛୁଆ ଭିତରେ ଦୁଇ ତିନି ବରଷରୁ ବେଶୀ ତଫାତ୍ ରହିବା ଉଚିତ ନୁହେଁ, ତାହାହେଲେ ମୋଟାମୋଟି ପ୍ରଥମ ଦଶବର୍ଷ ଭିତରେ ତିନି ଗୋଟି ଛୁଆ ଦୁଇ ତିନି ବରଷ ଲେଖାଏଁ ସାନବଡ଼ ହୋଇ ହେବା ସବୁଠୁଁ ଭଲ । ଆମ ଦେଶରେ ଜଣେ ପୁରୁଷ ଯଦି ହାରାହାରି ୨୫ ବର୍ଷ ବୟସରେ ବିବାହ କରେ ତା ହେଲେ ତାକୁ ୩୫ ବର୍ଷ ହେଲା ବେଳକୁ ତାର ଶେଷ ସନ୍ତାନ ଜନ୍ମ ହୋଇ ଯାଇଥିବ । ତା ହେଲେ ୫୫ । ୬୦ ବର୍ଷରେ ସେ ଅବସର ନେଲା ବେଳକୁ ତାର ଶେଷ ସନ୍ତାନଟିର ମଧ୍ୟ ଶିକ୍ଷା ଶେଷ ହୋଇ ଆସିଥିବ ।

ଏପରି ଭାବରେ ଇଚ୍ଛାନୁସାରେ ପରିବାର ଗଢ଼ିଲେ ଏବଂ ସନ୍ତାନ ପ୍ରସବ ଇଚ୍ଛାଧୀନ କରିବାକୁ ହେଲେ କୃତ୍ରିମ ଉପାୟରେ ଜନ୍ମ ନିରୋଧ କରିବା ଛଡ଼ା ଆଉ ଅନ୍ୟ ଉପାୟ ନାହିଁ । କୃତ୍ରିମ ଉପାୟରେ ଜନ୍ମ ନିରୋଧ ନ କରି ଆବଶ୍ୟକ ଅନୁସାରେ ଯୌନ ସଙ୍ଗମ ଛଡ଼ା ଅନ୍ୟ ସମୟରେ ସେଥିରୁ ବିରତ ହେବା ଲାଗି ଅନେକେ ପରାମର୍ଶ ଦେଇ ପାରନ୍ତି । ଏହା ଜନସାଧାରଣଙ୍କ ପକ୍ଷରେ ଆଦୌ ସମ୍ଭବ ନୁହେଁ, ଉଚିତ ମଧ୍ୟ ନୁହେଁ । ବାଧ୍ୟ ବାଧକତାରେ ଯଦି କେହୁ ଏପରି ଭାବରେ ସଂଯମ କରେ ତା ହେଲେ ତାର ବହୁ ପ୍ରକାର ମାନସିକ ବିକାର ଦେଖାଯାଏ । ଅନେକ ସମୟରେ ଏ ପ୍ରକାର ଲୋକେ ଅଯଥା ଚିଡ଼ ଚିଡ଼ ହୁଅନ୍ତି । ମନୁଷ୍ୟର ଶାରୀରିକ ତଥା ମାନସିକ ସ୍ୱାସ୍ଥ୍ୟ ଓ ପୂର୍ଣ୍ଣ ବିକାଶ ଉପଯୁକ୍ତ ଯୌନ ସଙ୍ଗମ ବିନା ଅନେକ ସମୟରେ ସଂଭବପର ହୋଇ ପାରେନା । ତେଣୁ ଏହା ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ ନୁହେଁ ।

ତା ହେଲେ କୃତ୍ରିମ ଉପାୟରେ ଜନ୍ମ ନିୟନ୍ତ୍ରଣ କରିବାକୁ ହେଲେ ପ୍ରଥମରୁ ପୁରୁଷ ଓ ସ୍ତ୍ରୀର ଉପଯୁକ୍ତ ମନସ୍ତାତ୍ତ୍ୱିକ ପ୍ରସ୍ତୁତି ହେବା ଦରକାର । ମନକୁ କିପରି ଭାବରେ ଗଢ଼ିଲେ ଓ କି ଉପାୟ ଅବଲମ୍ବନ କଲେ ମାନସିକ ବିକାର ଓ ଦ୍ୱନ୍ଦ୍ୱ ବିନା ଏହା ସଂଭବ ହୋଇ ପାରିବ ସେ ବିଷୟରେ ବିଚାର କରାଯାଉ ।

ଜନ୍ମ ନିରୋଧ କରିବାକୁ ହେଲେ ପୁରୁଷ ଓ ସ୍ତ୍ରୀକୁ ଏ ଦିଗରେ ମନର ଦୃଢ଼ତା ସହିତ ଅଗ୍ରସର ହେବାକୁ ହେବ । ପ୍ରଥମତଃ ଉଭୟଙ୍କର ସଚେତ ଚେଷ୍ଟା ଓ ସହଯୋଗ ଥିବା ଉଚିତ । ଜଣଙ୍କର ଅନିଚ୍ଛାରେ ଏହା କୌଣସି ପ୍ରକାରେ କୃତକାର୍ଯ୍ୟ ହୋଇ ପାରିବ ନାହିଁ ଏବଂ ହେଲେ ମଧ୍ୟ ଏହାର ମନସ୍ତାତ୍ତ୍ୱିକ ଜଟିଳତା ବହୁତ ହୁଏ । କାରଣ ଜଣେ ଜୋର ଜବରଦସ୍ତ ଏହାକୁ କାର୍ଯ୍ୟକାରୀ

କରାଇଲେ ଅପରପକ୍ଷ ଏହାକୁ ଅପମାନଜନକ ବୋଲି ମନେ କରେ ଏବଂ କଥାରେ ପ୍ରକାଶ ନ କଲେ ମଧ୍ୟ ମନେ ମନେ ଭୟଙ୍କର ଅଶାନ୍ତି ଭୋଗ କରେ ଏବଂ ଏଥିଲାଗି ଅପରପକ୍ଷକୁ ଘୃଣା ମଧ୍ୟ କରେ । ତେଣୁ ଉଭୟପକ୍ଷ ଖୁବ୍ ଭଲ ଭାବେ ବୁଝିବା ଦରକାର ଯେ ନାନା କାରଣରୁ ସେମାନଙ୍କ ପକ୍ଷରେ କୃତ୍ରିମ ଉପାୟରେ ଜନ୍ମନିରୋଧ କରିବା ନିତାନ୍ତ ଆବଶ୍ୟକ । ଏ ସମ୍ବନ୍ଧରେ ଯାହା ଯାହା କୁସଂସ୍କାର ରହିଛି ସେ ସବୁ ବିଷୟରେ ସ୍ପଷ୍ଟ ଧାରଣା ହେବା ଉଚିତ ଏବଂ ଅନ୍ୟାନ୍ୟ ବୈଜ୍ଞାନିକ ଯୁକ୍ତିଗୁଡ଼ିକ ମଧ୍ୟ ସେମାନଙ୍କ ମନ ଭିତରେ ଦୃଢ଼ ଭାବରେ ଉପସ୍ଥାପିତ ହେବା ଉଚିତ । ଅନେକ ସମୟରେ ସନ୍ତାନ ଉତ୍ପାଦନ କ୍ଷମତାର ହ୍ରାସ ହେଲେ କେତେକ ନିଜର ଶକ୍ତିର ହ୍ରାସ ହେଲା ବୋଲି ମନେ କରନ୍ତି । ଯେ କୌଣସି କାରଣରୁ ହେଉନା କାହିଁକି ଏହା ମନୁଷ୍ୟର ଗୋଟିଏ ବଦ୍ଧମୂଳ ଧାରଣା ବୋଲି ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି । ଅସ୍ତ୍ରୋପଚାର ଦ୍ୱାରା ଯଦି ମନୁଷ୍ୟକୁ ସନ୍ତାନ ଉତ୍ପାଦନ କରିବାର କ୍ଷମତାରୁ ବଞ୍ଚିତ କରାଯାଏ ତା ହେଲେ ଏହି ବଦ୍ଧମୂଳ ଧାରଣାଟି ଯତ ହୋଇପାରେ । ଫଳତ କ୍ରମେ କ୍ରମେ ଉକ୍ତ ମାନସିକ ଦ୍ୱନ୍ଦ୍ୱ ଫଳରେ ସେମାନେ ଦୁର୍ବଳ ମନୋଭାବାପନ୍ନ ହୋଇ ଯାଆନ୍ତି । ଅନେକ ସମୟରେ ମଧ୍ୟ ଏ ପ୍ରକାର ମାନସିକ ଦ୍ୱନ୍ଦ୍ୱରୁ ନିଜକୁ ରକ୍ଷା କରିବା ଲାଗି ପୁରୁଷ ଓ ସ୍ତ୍ରୀ ନାନାପ୍ରକାର ଅସାମାଜିକ ଯୌନ ବ୍ୟଭିଚାରରେ ନିଜକୁ ଲିପ୍ତ ରଖିବାକୁ ଚେଷ୍ଟା କରନ୍ତି । ତା ହେଲେ ସେମାନଙ୍କର ଅଚେତନ ମନରେ କାର୍ଯ୍ୟ କରୁଥିବା 'ଅଧମ ଭାବ' ର କିଛି ତୃପ୍ତି ହୁଏ । ଏହା ଏପ୍ରକାର ମାନସିକ ବିକାରର ଗୋଟିଏ ପ୍ରତିକ୍ରିୟା ମାତ୍ର ।

ଜନ୍ମ ନିରୋଧ ପାଇଁ କୃତ୍ରିମ ଉପାୟଗୁଡ଼ିକ ଅବଲମ୍ବନ କରିବା ପୂର୍ବରୁ ଗର୍ଭଧାରଣ, ପୁରୁଷ ଓ ସ୍ତ୍ରୀର ଜନନେନ୍ଦ୍ରିୟ, ଯୌନ ମିଳନର ବିଭିନ୍ନ ଅବସ୍ଥା, ପୁରୁଷ ସ୍ତ୍ରୀର ଶୁକ୍ରାଣୁ ଓ ଡିମ୍ବାଣୁର ନିସ୍ସରଣ, ସେମାନଙ୍କର ଗତି, ପ୍ରକୃତି ଓ ଅନ୍ୟାନ୍ୟ ସମସ୍ତ ପ୍ରକାର କ୍ରିୟା ପ୍ରକ୍ରିୟା ବିଷୟରେ ଉଭୟଙ୍କର ଯଥାର୍ଥ ଜ୍ଞାନ ହେବା ଉଚିତ । ତାପରେ ପ୍ରତ୍ୟେକ ଦମ୍ପତିଙ୍କର ନିଜର ସୁବିଧା ଓ ରୁଚି ଅନୁସାରେ ଅନୁମୋଦିତ ପ୍ରଣାଳୀ ଅବଲମ୍ବନ କରିବା ଉଚିତ । ଏ ବିଷୟରେ ବିଭିନ୍ନ ରୁଚି ଦେଖାଯିବା ସ୍ୱାଭାବିକ, ତେଣୁ କୌଣସି ଗୋଟିଏ ପ୍ରଣାଳୀ ସମସ୍ତଙ୍କୁ ସମାନ ଭାବରେ ସୁବିଧା-ଜନକ ନ ହୋଇ ପାରେ । ବର୍ତ୍ତମାନ କେତୋଟି ପ୍ରଧାନ କୃତ୍ରିମ ଉପାୟର ମନସ୍ତାତ୍ତ୍ୱିକ ଗୁଣାଗୁଣ ବିଷୟରେ ଆଲୋଚନା କରାଯାଉ ।

ଅନେକ ପୁରୁଷ କୌଣସି କୃତ୍ରିମ ବସ୍ତୁର ସାହାଯ୍ୟ ନ ନେଇ ଯୌନ ସଙ୍ଗମବେଳେ ଠିକ୍ ବୀର୍ଯ୍ୟ ନିର୍ଗତ ହେବାର ଅବ୍ୟବହିତ ପୂର୍ବରୁ ପୁରୁଷ ଜନନେନ୍ଦ୍ରିୟକୁ ଯୋନି ଭିତରୁ ବାହାର କରି ଆଣନ୍ତି ଓ ବାହାରେ ବୀର୍ଯ୍ୟ ନିର୍ଗତ ହୋଇ ଥାଏ । ତେଣୁ ଗର୍ଭସଞ୍ଚାର ହେବାର ସମ୍ଭାବନା କମ ହୁଏ । କିନ୍ତୁ ଏହା ଗର୍ଭନିୟନ୍ତ୍ରଣ ଦୃଷ୍ଟିରୁ ଆଦୌ ନିରାପଦ ନୁହେଁ, କାରଣ ପୁରୁଷ ଶୁକ୍ର କୀଟାଣୁ ବୀର୍ଯ୍ୟ ନିର୍ଗତ ହେବା ପୂର୍ବରୁ ବାହାରି ଆସିବାର ଯଥେଷ୍ଟ ସମ୍ଭାବନା ଥାଏ । ତା ଛଡ଼ା ମଧ୍ୟ ମନୋବିଜ୍ଞାନ ଦୃଷ୍ଟିରୁ ଏହା ବହୁ କ୍ଷତିକାରକ । ପ୍ରଥମତଃ ଯୌନ ସଙ୍ଗମବେଳେ ଗୋଟିଏ ଅଯଥା ଉଦ୍‌ବେଗ ପୁରୁଷ ମନରେ କାମ କରୁଥାଏ, ତେଣୁ ସେ ନିଶ୍ଚିନ୍ତ ଭାବରେ ଯୌନ ସଙ୍ଗମରେ ନିଯୁକ୍ତ ହୋଇ ପାରେନା । ଦ୍ୱିତୀୟତଃ ବୀର୍ଯ୍ୟ ନିର୍ଗତ ହେଲା ବେଳେହିଁ ଯୌନ ସଙ୍ଗମର ଚରମ

ପରଣତ ହୁଏ ଏବଂ ସେ ସମୟରେ ଉଭୟେ ନିବଡ଼ ଆଲିଙ୍ଗନରେ ପରସ୍ପରକୁ ଧରି ରହିବା ଉଚିତ ଏବଂ ଯୋନି ଭିତରୁ ପୁରୁଷର ଲିଙ୍ଗ କୌଣସି ମତେ ବାହାରି ଆସିବା ଉଚିତ ନୁହେଁ ଏବଂ ପୁରୁଷ ପକ୍ଷରୁ ଯାହା ହେଉ ସ୍ତ୍ରୀ ପକ୍ଷରେ ଏହା ଅତ୍ୟନ୍ତ କ୍ଷତିକାରକ ଅଟେ । ଏହା ଜଣା ଶୁଣା ଯେ ସ୍ତ୍ରୀର ଚରମଯୌନ ଉତ୍ତେଜନା (Orgasm) ଓ ତାର ଉପଶମ ପୁରୁଷ ଅପେକ୍ଷା ଡେରିରେ ହୁଏ । ପୁରୁଷ ଶୀଘ୍ର ଉତ୍ତେଜିତ ହୋଇଯାଏ ଏବଂ ତାର ଶୀଘ୍ର ମଧ୍ୟ ତାର ଉତ୍ତେଜନା କମିଯାଏ, ତେଣୁ ପୁରୁଷର ବୀର୍ଯ୍ୟପାତ ହେଲାବେଳକୁ ହୁଏତ ସ୍ତ୍ରୀର ଚରମ ଉତ୍ତେଜନା ଆସି ନ ଥାଏ, ତେଣୁ ତାର ଯୌନ ପିପାସାର ତୃପ୍ତି ହୁଏ ନା । ଫଳରେ ତା ମନ ଭିତରେ ନାନାପ୍ରକାର ମାନସିକ ପ୍ରତିକ୍ରିୟା ଦେଖାଯାଏ । ତାର ମୁଣ୍ଡ ଦେହ ବଥାଏ— ତାକୁ ଦୁର୍ବଳ ଲାଗେ—ସେ ସବୁବେଳେ ଅଯଥା ଚିଡ଼ ଚିଡ଼ ହୁଏ, ଫଳରେ ଦାମ୍ପତ୍ୟ ଜୀବନରେ ବହୁ ବାଧା ଆସେ । ଯେଉଁ ସ୍ତ୍ରୀର ଅନବରତ ଏ ପ୍ରକାର ଅଶାନ୍ତ ହୁଏ ସେ କେବେଁ ହେଲେ ସ୍ୱାମୀକୁ ଭଲ ପାଇ ପାରିବ ନାହିଁ କି ଉପଯୁକ୍ତ ଗୃହିଣୀ ହୋଇ ଘର କାମ ସୁଚାରୁରୂପେ ଚଳାଇ ପାରିବ ନାହିଁ । ତା ଛଡ଼ା ହିଷ୍ଟିରିଆ ପ୍ରଭୃତି ନାନାପ୍ରକାର ମାନସିକ ବିକାର ମଧ୍ୟ ଦେଖାଦିବା ସମ୍ଭବ । ପୁରୁଷ ଲିଙ୍ଗ ଯୋନି ଭିତରେ ରହିଥିଲେ ବୀର୍ଯ୍ୟପାତ ହେଲା ପରେ ସୁଦ୍ଧା ଯେଉଁ କିଛି ସମୟ ପର୍ଯ୍ୟନ୍ତ ଏହା ନରମ ଅବସ୍ଥାକୁ ଆସି ନ ଥାଏ ସେହି ସମୟରେ ସ୍ତ୍ରୀର ଚରମ ଉତ୍ତେଜନା ହୋଇ ଯାଇ ପାରେ । ତେଣୁ ଏହା ସବୁ ସମୟରେ ଗ୍ରହଣୀୟ ନୁହେଁ ।

ତାପରେ ରବର ତଥାର କ୍ୟାପ ଲଗାଇବାରେ କେତେକ ଅସୁବିଧା ଅଛି । ଏପରି ଭାବରେ ରବର କ୍ୟାପ ବ୍ୟବହାର କରିବା ଉଚିତ ଯାହାଦ୍ୱାରା କୌଣସି ପକ୍ଷର ଯୌନ ସଙ୍ଗମ

ସୁଖିରେ ଅଯଥା ପ୍ରତିବନ୍ଧକ ସୃଷ୍ଟି ନ ହୁଏ । ପୁରୁଷ ରବର ମୁଣିଟିଏ ନିଜ ଜନନେନ୍ଦ୍ରିୟରେ ବ୍ୟବହାର କଲେ ଗର୍ଭସଂଚାର ସହଜରେ ହୁଏ ନା । କିନ୍ତୁ ଏପରି ବ୍ୟବହାର ଲାଗି ଉଭୟେ ପ୍ରସ୍ତୁତ ହେବା ଦରକାର । ପୁରୁଷ ସୁବିଧାରେ ଏହାକୁ ବ୍ୟବହାର କରି ପାରିଲେ ଅନେକ ସମୟରେ ବ୍ୟବହାର କରିବା ଓ ନ କରିବା ଭିତରେ ଥିବା ପ୍ରଭେଦ ସ୍ତ୍ରୀ ସହଜରେ ଜାଣି ପାରେନା । ଅର୍ଥାତ୍ ପୁରୁଷ ସୁବିଧା-ଜନେ କୌଣସି ଗୋଟିଏ ଜେଲ୍ ବ୍ୟବହାର କରି କିମ୍ବା ପ୍ରଥମେ ସ୍ତ୍ରୀକୁ ଭଲଭାବେ ଉତ୍ତେଜିତ କରିସାରି ଯୋନି ରନ୍ଧ୍ର ଭଲଭାବେ ଲାଳୁଆ ହୋଇ ସାରିଲା ପରେ ଏହାକୁ ବ୍ୟବହାର କଲେ ସ୍ତ୍ରୀ ତଫାତ୍ ବୁଝି ପାରିବନି—ସ୍ତ୍ରୀର ଯୌନ ସଂଭୋଗରେ ମଧ୍ୟ କୌଣସି ଅସୁବିଧା ହୁଏନା । କିନ୍ତୁ ପୁରୁଷର ସୁଖ କିଛି କମିଯାଏ । ଯୋନି ଓ ପୁରୁଷର ଲିଙ୍ଗ ଭିତରେ ଗୋଟିଏ ରବରର ମାଧ୍ୟମ ରହୁଥିବାରୁ ପୁରୁଷର ଅଶାନ୍ତି ହୋଇପାରେ—ଅବଶ୍ୟ ସବୁବେଳେ ବ୍ୟବହାର କଲେ ପୁରୁଷର ଅଭ୍ୟାସ ହୋଇ ଯାଏ । ସାମାନ୍ୟ ଅଶାନ୍ତି ହେଲେ ଏହା ବ୍ୟବହାର କରିବା ଉଚିତ ନୁହେଁ । ସ୍ତ୍ରୀ ଯୋନି ଭିତର ଦେଇ ଯେଉଁ ରବର ମୁଣି ସାହାଯ୍ୟରେ ଜରାୟୁର ମୁଖ ବନ୍ଦ କରାଯାଏ ତାହା ହେଉଛି ସବୁଠାରୁ ଭଲ, କାରଣ ଏହା ଦ୍ୱାରା ଯୌନ ସଙ୍ଗମ କୌଣସି ରକମର ମାଧ୍ୟମ ଦେଇ ସମାଧିତ ହୁଏ ନାହିଁ ଅଥଚ ପୁରୁଷ ଶୁକ୍ର କୀଟାଣୁ ଜରାୟୁ ଭିତରକୁ ପ୍ରବେଶ କରି ପାରେନା । ଏଥିରେ ଉଭୟଙ୍କର ଯୌନ ସଂଭୋଗରେ କୌଣସି ଅସୁବିଧା ହୁଏ ନାହିଁ । କିନ୍ତୁ ଏ ବିଷୟରେ ସ୍ତ୍ରୀର ପୁରା ଦାୟିତ୍ୱ । କାରଣ ସ୍ତ୍ରୀମାନେ ଯୌନ ସଂଗମର ଇଚ୍ଛା ହେଲା ପରେ କୌଣସ ରକମର ବିରକ୍ତିକର କାମ କରିବାକୁ ରାଜି ହୁଅନ୍ତି ନାହିଁ—ଏ ରବରଟି ଲଗାଇବା ପାଇଁ କିଛି ସମୟ ଦରକାର ଏବଂ

ସେହି ସମୟ ଭିତରେ ସେମାନଙ୍କର ଇଚ୍ଛା କମିଯାଏ । ତେଣୁ ପ୍ରତ୍ୟେକ ଦିନ ରାତରେ ଶୋଇବାକୁ ଯିବା ପୂର୍ବରୁ ନିୟମିତ ଭାବେ ଏହି ରବରଟି ଜରାୟୁ ମୁହଁରେ ଦେଇ ଶୋଇବାକୁ ଗଲେ ଏ ପ୍ରକାର ଅସୁବିଧା ହେବ ନାହିଁ । ଏ ପ୍ରଣାଳୀଟି ଉତ୍କୃଷ୍ଟ ବୋଲି ଅନେକେ ମନେ କରନ୍ତି । ୟୁରୋପରେ ସ୍ତ୍ରୀଲୋକମାନଙ୍କ ଡାକ୍ତର-ଖାନାମାନଙ୍କରେ ଥିବା ଜନ୍ମନିୟନ୍ତ୍ରଣ କେନ୍ଦ୍ରମାନଙ୍କରେ ଏ ବିଷୟରେ ସ୍ୱତନ୍ତ୍ର ଶିକ୍ଷା ଦିଆଯାଏ ।*

ଯେ ପ୍ରକାର କୃତ୍ରିମ ଉପାୟ ଅବଲମ୍ବନ କରି ହେଉ ନା କାହିଁକି ତାହା ଯୌନ ସଙ୍ଗମର ପୂର୍ବରୁ ତାର ସମସ୍ତ ବନ୍ଦୋବସ୍ତ ହୋଇଯାଇଥିବା ଦରକାର । ଯୌନ ସଙ୍ଗମର ଠିକ୍ ପୂର୍ବରୁ ବା ଠିକ୍ ପରେ ସ୍ତ୍ରୀ ପକ୍ଷରେ କୌଣସି ପ୍ରକାର ବନ୍ଦୋବସ୍ତ ବା ସମୟ ସାପେକ୍ଷ କାମ ସମ୍ଭବ ନୁହେଁ । ତେଣୁ ଯୌନ ସଙ୍ଗମପରେ ପିଚକାରୀ ଦ୍ୱାରା ଶୁକ୍ର କୀଟାଣୁ ନଷ୍ଟ କରିବା ଅନେକ ସମୟରେ ସମ୍ଭବ ହୁଏ ନାହିଁ । ମୋଟାମୋଟି ଯେଉଁ ଉପାୟରେ ପୁରୁଷ ବା ସ୍ତ୍ରୀର ଯୌନ ସମ୍ଭୋଗରେ କୌଣସି ପ୍ରକାର ପ୍ରତିବନ୍ଧକ ନ ହୁଏ ତାହା ଜନ୍ମନିରୋଧ ପାଇଁ ଆଗରୁ ପ୍ରତିଷ୍ଠିତ ସ୍ତ୍ରୀ ପୁରୁଷ ପକ୍ଷରେ ମନୋରଞ୍ଜନ ଦୃଷ୍ଟିରୁ ଅଦ୍ଭୁତକର ନୁହେଁ ।

କୃତ୍ରିମ ଉପାୟରେ ଗର୍ଭ ସଞ୍ଚାର ବନ୍ଦ କରିବାକୁ ଚେଷ୍ଟା ହେଉ ହେଉ ଯଦି କୌଣସି କାରଣରୁ ଗର୍ଭସଞ୍ଚାର ହୋଇଯାଏ ଏବଂ ପୁରୁଷ ଓ ସ୍ତ୍ରୀ ଉଭୟେ ଯଦି ମନର ଦୃଢ଼ତାର ସହିତ ଚାହାନ୍ତି ଯେ ସେମାନଙ୍କର ସେହି ସନ୍ତାନ ନ ହେଉ ତା ହେଲେ ପ୍ରଥମ ଅବସ୍ଥାରେ ସୁଦକ୍ଷ ଡାକ୍ତରମାନଙ୍କ ସାହାଯ୍ୟରେ ବିନା ଆପତ୍ତିରେ

*କଟକ ବଡ଼ ଡାକ୍ତରଖାନାରେ ଏପରି ଗୋଟିଏ କେନ୍ଦ୍ର ଖୋଲା ଯାଇଥିବାର ଜଣାଯାଏ ।

ଗର୍ଭ ନଷ୍ଟ କରିଦେବା ଉଚିତ। ଏହାକୁ ଆଇନ ଭୁକ୍ତ କରିଦେଲେ ସମାଜ ପକ୍ଷରେ ମଙ୍ଗଳକାରକ ହେବ। କାରଣ ସ୍ୱାମୀ ସ୍ତ୍ରୀ ଯେଉଁ ସନ୍ତାନର ଜନ୍ମକୁ କୌଣସିମତେ ଅଗ୍ରହର ସହିତ ଗ୍ରହଣ କରନ୍ତି ନାହିଁ ବରଂ ଏଥିଲାଗି ସବୁବେଳେ ଅନୁତାପ କରନ୍ତି ସେ ଯେଉଁଠାରେ ସନ୍ତାନଟି ଅପାରିତ ଭାବରେ ସେମାନଙ୍କ ଆଗରେ ଦେଖା ଦେବାଦ୍ୱାରା ଅନେକ ସମୟରେ ଉପଯୁକ୍ତ ଯତ୍ନ ଓ ସମ୍ମାନ ପାଇ ପାରେନା। ଏ ପ୍ରକାର ଅପାରିତ ସନ୍ତାନମାନେ ସମାଜର କୌଣସି ମଙ୍ଗଳ କରିବାରେ ସମର୍ଥ ହେବେ ନାହିଁ। ପ୍ରଥମରୁ ଗୋଟିଏ ବ୍ୟର୍ଥତା ନେଇ ଜୀବନ ଆରମ୍ଭ କରିବାରୁ କ୍ରମେ କ୍ରମେ ଅସାମାଜିକ କାର୍ଯ୍ୟରେ ବ୍ୟାପୃତ ରହିବା ସେମାନଙ୍କ ପକ୍ଷରେ ଅସମ୍ଭବ ନୁହେଁ। ବାପ ମା ଜାଣି ଶୁଣି ଅନାସ୍ଥାଭାବ ନ ଦେଖାଇଲେ ସୁଦ୍ଧା କାର୍ଯ୍ୟକଳାପରେ, ଲାଳନ ପାଳନରେ ଗୋଟିଏ ହତାଦରଭାବ ଫୁଟି ଉଠେ। ତା ପରେ ସେ ବଡ ହେଲା ପରେ ମଧ୍ୟ ଶୁଣିବାକୁ ପାଏ ଯେ କେହି ଆଉ ତୁଅ ନ ଗୁହିଁ ଥିଲାବେଳେ ସେ ଆସି ପହଞ୍ଚିଛି। ଅତଏବ ସେ ନିଜକୁ ଅଦରକାରୀ ବୋଲି ଭାବେ। କେତେକ ବାପ ମା ଏପରି ପିଲାକୁ ଫାଲ୍‌ତୁ ବୋଲି ନାଁ ଦେଇଥିବାର ମଧ୍ୟ ଶୁଣାଯାଏ। ଏହାର ବିଷମୟ ଫଳ ସନ୍ତାନ ତଥା ସମାଜ ପକ୍ଷରେ ଏତେ ବେଶୀ ଯେ ଭଲ ଭାବେ ବିଶ୍ଳେଷଣ କରି ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ। ସମାଜର ମଙ୍ଗଳ ଦୃଷ୍ଟିରୁ ଏହି ପ୍ରଥାଟିକୁ ସମାଜ ଗ୍ରହଣ କରିନେବା ଉଚିତ। ଗ୍ରହଣ ନକରିବା ଫଳରେ ବରଂ ସମାଜରେ ବ୍ୟଭିଚାର ଓ ଲୁଚିଲୁଚେଇ ଉପାୟରେ ଗର୍ଭନଷ୍ଟ କରାଇବା ଦ୍ୱାରା ଅଯଥା ସ୍ୱାସ୍ଥ୍ୟହାନି ଓ ଜୀବନକ୍ଷୟ ବହୁ ପରିମାଣରେ ଦେଖା ଦେଉଛି। ଜଣାଯାଏ ଯେ ରୁଷିଆରେ ଏହା ନ୍ୟାୟମାନୁମୋଦିତ ହେଲା ପରେ ଓ ଉଚିତ ଶିକ୍ଷା ଓ ପ୍ରଚୁର

ଫଳରେ ଅକାଳ ଗର୍ଭ ନଷ୍ଟ ସଂଖ୍ୟା ପୂର୍ବ ଅପେକ୍ଷା ଓ ଅନ୍ୟାନ୍ୟ ଦେଶ ତୁଳନାରେ ବହୁତ କମି ଯାଇଛି । କାରଣ ସୁଦକ୍ଷ ଡାକ୍ତରମାନେ ଗର୍ଭନଷ୍ଟ କରିବାକୁ ଚାହୁଁଥିବା ମାଆମାନଙ୍କ ପ୍ରଥମେ ବହୁତ ବୃତ୍ତାନ୍ତ ଓ ଯେଉଁ କାରଣରୁ ସେ ଗର୍ଭନଷ୍ଟ କରିବାକୁ ଯାଉଛନ୍ତି ସେ ସବୁର ଦୂରୀକରଣ ଲାଗି ସମସ୍ତ ଚେଷ୍ଟା କରାଯାଏ । ତାପରେ ଯଦି ଦେଖନ୍ତି ଯେ ଗର୍ଭନଷ୍ଟ କରିବା ଦ୍ୱାରା ତାର ପ୍ରକୃତରେ ମଙ୍ଗଳ ହେବ ତା ହେଲେ ବୈଜ୍ଞାନିକ ପ୍ରଣାଳୀରେ ତାହା ସମ୍ପାଦନ କରି ଥାଆନ୍ତି । ଆମ ଦେଶରେ ମଧ୍ୟ ଏହି ପ୍ରଣାଳୀକୁ ନିୟମ ପ୍ରଣୟନ ଦ୍ୱାରା ଗ୍ରହଣ କରି ସୁଦକ୍ଷ ଡାକ୍ତରମାନଙ୍କୁ ଏ କ୍ଷେତ୍ରରେ ନିଯୋଗ କରିବା ଉଚିତ । ମାତ୍ର ଦ୍ୱିମାସର ଭ୍ରୂଣ ଏପରି ପକ୍ୱତା ଲାଭ କରି ନ ଥାଏ ଯେ ତାକୁ ନଷ୍ଟ କରି ଦେଲେ ନରହତ୍ୟା ହୋଇଯିବାର ସମ୍ଭାବନା । ଏହାର ଫଳାଫଳକୁ ଭିନ୍ନ ଭିନ୍ନ ଦୃଷ୍ଟି କୋଣରୁ ଆଲୋଚନା କରି ତାର ବିସ୍ତାର ହେବା ଉଚିତ ।

ବାପ ମାଙ୍କର ସବୁ ଚେଷ୍ଟା ସତ୍ତ୍ୱେ ଯଦି ସନ୍ତାନ ଜନ୍ମ ହୁଏ ତା ହେଲେ ସେମାନଙ୍କର କର୍ତ୍ତବ୍ୟ ହେଉଛି ସେହି ଛୁଆକୁ କୌଣସି ପ୍ରକାରେ ଅବାଞ୍ଛନୀୟ ବା ପାଲ୍‌ତୁ ବୋଲି ମନେ ନ କରିବା । ଏ ବିଷୟରେ ସଂପୂର୍ଣ୍ଣରୂପେ ସଚେତ ହୋଇ ସନ୍ତାନର ଉପଯୁକ୍ତ ଲାଳନ ପାଳନରେ ଯେପରି ସାମାନ୍ୟ ମାତ୍ର ତ୍ରୁଟି ନ ହୁଏ । ସେ ବଡ଼ ହେଲା ପରେ ମଧ୍ୟ କୌଣସି କାରଣରୁ ବିରକ୍ତ ହୋଇ ବାପ ମା ମାନେ ଯେପରି ନ ଜଣାନ୍ତି ଯେ ତାକୁ କେହି ଚାହିଁ ନ ଥିଲେ । ନଚେତ୍ ବାପ ମା ତଥା ସମାଜକୁ ଏଥିଲାଗି ବହୁ କଷ୍ଟ ଭୋଗିବାକୁ ପଡ଼ିବ ।

---

# ଗର୍ଭସଂଗ୍ରହ ଓ ଗର୍ଭନିୟନ୍ତ୍ରଣ

ଡକ୍ଟର ରାଧାକୃଷ୍ଣ ମହାନ୍ତି

"ଗର୍ଭସଂଗ୍ରହ କିପରି ହୁଏ" ଓ "ଭ୍ରୂଣ କିପରି ଚାଳିଶ ସପ୍ତାହ-କାଳ ଗର୍ଭରେ ରହି ବଢ଼େ" ଏହି ପ୍ରଶ୍ନଗୁଡ଼ିକର ସମାଧାନରେ ଲିଙ୍ଗସମ୍ବନ୍ଧୀୟ ଅନେକ ବୈଜ୍ଞାନିକତତ୍ତ୍ୱ ଚିନ୍ତା କରିବାକୁ ହୋଇଥାଏ । ଜନ୍ମ ସମ୍ବନ୍ଧରେ ବହୁ ରହସ୍ୟପୂର୍ଣ୍ଣ ବିବରଣୀ ଭିନ୍ନ ଭିନ୍ନ ଜାତି ଓ ଦେଶରେ ପ୍ରଚଳିତ ଥିଲେ ମଧ୍ୟ ବୈଜ୍ଞାନିକମାନେ ଜନ୍ମକୁ ଗୋଟାଏ ପ୍ରହେଳିକାପୂର୍ଣ୍ଣ ଘଟଣା ବୋଲି ଭାବୁ ନାହାନ୍ତି । ବିଜ୍ଞାନ ମତରେ ଜନ୍ମ ଏକତମ ଜୀବନ-ପ୍ରକ୍ରିୟା ଓ ଜୀବଧର୍ମ । ପ୍ରାଣୀମାନେ ସେମାନଙ୍କର ଜୀବନକାଳଯାକ ପ୍ରଜନନକ୍ଷମ ନୁହନ୍ତି । ଜୀବନୀଶକ୍ତିର ନିୟମ ଅନୁସାରେ ପ୍ରତ୍ୟେକ ପ୍ରାଣୀକୁ ଜୀବନର ଅଧିକାଂଶ ସମୟ ଖାଦ୍ୟ ଓ ଆତ୍ମରକ୍ଷା ପାଇଁ ଉଦ୍ୟୋଗ କରିବାକୁ ହୁଏ । ସୁବିଧା ଓ ସୁଯୋଗ ପାଇଲେ ବୟସ ଅନୁସାରେ ପ୍ରାଣୀମାନେ ଅନ୍ୟତମ ଜୀବଧର୍ମ "ପ୍ରଜନନ" କ୍ଷମ ହୋଇଥାନ୍ତି । ମନୁଷ୍ୟ ମଧ୍ୟ ଅନ୍ୟ ପ୍ରାଣୀମାନଙ୍କ ପରି ଏହିସବୁ ଜୀବଧର୍ମରେ ଅନୁପ୍ରାଣିତ ହୋଇଥାଏ ।

ସନ୍ତାନ ଉତ୍ପାଦନ ବା ପ୍ରଜନନ (Reproduction) ବିଷୟକ ଆଲୋଚନାରେ ଡିମ୍ବକୋଷ, ଶୁକ୍ରକୋଷ ଓ ଅନ୍ୟାନ୍ୟ ଭିତର ଓ ବାହାର ଜନନେନ୍ଦ୍ରିୟ ଗୁଡ଼ିକର ଗଠନ ପ୍ରଣାଳୀ, କ୍ରମବୃଦ୍ଧି, ସେଗୁଡ଼ିକର ପୃଥକ୍ ପୃଥକ୍ କାର୍ଯ୍ୟ ସମ୍ପାଦନ, ଡିମ୍ବାଣୁ ଓ ଶୁକ୍ରାଣୁର ପୂର୍ଣ୍ଣାଙ୍ଗପ୍ରାପ୍ତି, ଋତୁ ସ୍ତ୍ରୀ ଓ ପୁରୁଷର ଯୌବନ ପ୍ରାପ୍ତି ଓ ପ୍ରାପ୍ତ-

ବନ୍ଧ୍ୟତାର ଲକ୍ଷଣ ପ୍ରଭୃତି ଘଟନାର ଆନୁଷଙ୍ଗିକ ଜନନେନ୍ଦ୍ରିୟଗୁଡ଼ିକର ଭାବ ଓ ପରିବର୍ତ୍ତନ ସ୍ତ୍ରୀ-ପୁରୁଷ ସଂସର୍ଗ କାର୍ଯ୍ୟ ବୀର୍ଯ୍ୟସ୍ଖଳନ ଓ କ୍ଷେପଣ ଡିମ୍ବାଣୁର ନିକ୍ଷେପ, ନିଷିକ୍ତ ଡିମ୍ବାଣୁର ସଂସ୍ଥାପନ, ରକ୍ଷଣ ଓ ସମବୃଦ୍ଧି ଇତ୍ୟାଦି ପ୍ରାକୃତିକ ଓ ଜୀବତତ୍ତ୍ୱ ସମ୍ବନ୍ଧୀୟ ମୌଳିକ ଘଟନାଗୁଡ଼ିକୁ ପର ପର ଚିନ୍ତା ଓ ବିଚାର କରିବାକୁ ହୁଏ । ଏ ପ୍ରବନ୍ଧର ଉଦ୍ଦେଶ୍ୟ ଜନ୍ମନିୟନ୍ତ୍ରଣ ପ୍ରଥାଗୁଡ଼ିକୁ ଭଲଭାବରେ କାର୍ଯ୍ୟକାରୀ କରିବାଲାଗି ଉପରୋକ୍ତ ମୌଳିକ ଘଟନାଗୁଡ଼ିକ ଭିତରୁ ଦରକାରୀ ଓ ପ୍ରାସଙ୍ଗିକ ବିଷୟଗୁଡ଼ିକର ସଂକ୍ଷିପ୍ତ ଆଲୋଚନା କରିବା ।

× × × ×

ବିଜ୍ଞାନର ମୌଳିକ ତଥ୍ୟ ସାହାଯ୍ୟରେ ମନୁଷ୍ୟ ନିଜର ଓ ଅନ୍ୟାନ୍ୟ ପ୍ରାଣୀମାନଙ୍କର ପ୍ରଜନନ କ୍ରିୟାଗୁଡ଼ିକୁ ଜୀବତତ୍ତ୍ୱ ସମ୍ବନ୍ଧୀୟ ଅନୁଶୀଳନୀ ଓ ଅଭିଜ୍ଞତା ସାହାଯ୍ୟରେ ବିଶ୍ଳେଷଣ କରି ଓ ସେମାନଙ୍କର ଭାବ ଓ ଘଟନାଗୁଡ଼ିକ ସୁଚିନ୍ତିତ ଭାବରେ ନିୟନ୍ତ୍ରଣ କରି ଜନ୍ମକୁ ନିଜର ଇଚ୍ଛାଧୀନ କରିବାର ସାହାଯ୍ୟ କରିଛନ୍ତି । ଅନେକ ସ୍ଥଳରେ ପ୍ରଜନନ ବୃଦ୍ଧି ବା ଜନ୍ମକ୍ଷୟ ପ୍ରଣାଳୀଗୁଡ଼ିକୁ ବ୍ୟବହାର କରି ଜନସଂଖ୍ୟାକୁ ନିର୍ଣ୍ଣୟ କରିବାକୁ ସକ୍ଷମ ହୋଇଛନ୍ତି । ଖାଦ୍ୟପେୟ, ପରିଚ୍ଛଦ, ବାସସ୍ଥାନ, ଶିକ୍ଷା, ସ୍ୱାସ୍ଥ୍ୟରକ୍ଷା ଇତ୍ୟାଦି ଜୀବନଧାରଣର ଆନୁଷଙ୍ଗିକ ଅବସ୍ଥାକୁ ଦେଖି ଓ ବିଚାର କରି ବୈଜ୍ଞାନିକମାନେ ଆଶା ପୋଷଣ କରନ୍ତି ଯେ ଭବିଷ୍ୟତରେ ପୃଥିବୀର ଲୋକସଂଖ୍ୟାକୁ ନିଜର ଅଧୀନ କରି ରଖିବେ ।

କାରଣ ବିଶେଷ ଉନ୍ନତ ହେବ ଭାବି ଭାରତ ସରକାର ଜନ୍ମନିରୋଧ ପାଇଁ ଯୋଜନାସବୁ ତିଆରି କରିବାକୁ ଗୋଟିଏ

ଯୋଜନା କମିସନ ବସାଇଥିଲେ । ଆମ ଦେଶର ଲୋକସଂଖ୍ୟା ଦ୍ରୁତ ଦ୍ରୁତଗତିରେ ବଢ଼ୁଛି ଓ ବଢ଼ିବାରେ ଲାଗିଛି । ଲୋକସଂଖ୍ୟା ଯେତେ ବେଶୀ ବଢ଼ିବ, ପ୍ରାକୃତିକ ସମ୍ପଦ ସେତେ ବେଶୀ ଅକୁଳାନ ହେବ । ପ୍ରାକୃତିକ ସମ୍ପଦ ଛଡ଼ା ଅନ୍ୟ ଉପାୟରେ ଦେଶର ସମୃଦ୍ଧ ରୋଜଗାର ନ ବଢ଼ି ଲୋକସଂଖ୍ୟା ବଢ଼ିଲେ ଖାଇବା ପିଇବା, ପିନ୍ଧିବା ଇତ୍ୟାଦି ସୁଖବାସରେ ରହିବାର କଷ୍ଟ ସାଧାରଣ ଲୋକଙ୍କ ଉପରେ ପଡ଼େ । ମନୁଷ୍ୟ ଆବହମାନ କାଳରୁ ସୁଖ ସ୍ୱାଚ୍ଛନ୍ଦ୍ୟ କାମନା କରି ଆସିଛି ଓ ସେଥିପାଇଁ ଯଥାପରୋନାସ୍ତି ଚେଷ୍ଟା କରୁଛି । ଦେଶର ପ୍ରାକୃତିକ ସମ୍ପଦର ଅକୁଳାନ ହେଲେ ବା ଭିନ୍ନ ଭିନ୍ନ ପ୍ରକାର ରୋଜଗାର ଦ୍ୱାରା ଆର୍ଥିକ ଉନ୍ନତି ନ ହେଲେ ଲୋକଙ୍କର ସାମାଜିକ ସଂଗଠନଗୁଡ଼ିକ ମଧ୍ୟ ଦୁର୍ବଳ ହୋଇ ପଡ଼େ । ଏହାପରି ଆଉ ଅନେକ କାରଣ ଯୋଗୁ ଲୋକ ସଂଖ୍ୟାକୁ ଆୟତ୍ତାଧୀନ କରି ରଖିବା ପାଇଁ ବୈଜ୍ଞାନିକ ଚିନ୍ତା ଓ ମୀମାଂସାର ପ୍ରୟୋଜନ । ଏହି ସବୁ ବିଚାର କରି ଜନ୍ମ-ନିୟନ୍ତ୍ରଣର ରୀତିଗୁଡ଼ିକୁ ଯଥାସମ୍ଭବ ଲୋକ ହିତରେ ଲଗାଇବାକୁ ଉପରୋକ୍ତ ଯୋଜନା କମିଶନ ସ୍ଥିର-ମତ ଦେଇଅଛନ୍ତି ଓ ଦେଶ ସରକାର ଏବଂ ଲୋକେ ଉଭୟଙ୍କୁ ଜନ୍ମନିୟନ୍ତ୍ରଣ ପନ୍ଥା ଓ ବ୍ୟବସ୍ଥାଗୁଡ଼ିକ ଲୋକପ୍ରିୟ କରିବାକୁ ଅନୁରୋଧ କରନ୍ତି ।

ଲୋକଙ୍କର ସମୂହ ସ୍ୱାସ୍ଥ୍ୟର ଉନ୍ନତି କରିବାକୁ ହେଲେ ସାମାଜିକ ସଂଗଠନ ଦ୍ୱାରା ଜୀବିକାନିର୍ବାହ କରିବାର ମାନ ଓ ନିର୍ଦ୍ଧାରିତ ବାଧିଗୁଡ଼ିକ ଉଚ୍ଚସ୍ତରରେ ରଖିବା ଦରକାର ହୁଏ । ଆନୁଷଙ୍ଗିକ ଅବସ୍ଥାକୁ ବିଚାର ନ କରି କେବଳ ଲୋକସଂଖ୍ୟା ବଢ଼ିଲେ କାହାର ଉପକାର ହୁଏ ନାହିଁ; ଦେଶରେ କେବଳ ଅଭାବ ଓ ଅଶାନ୍ତି ବଢ଼େ । ଏଥିପାଇଁ ଜନ୍ମନିରୋଧର ନିୟମଗୁଡ଼ିକର

ପାଳନ ପ୍ରୟୋଜନ ଓ ତା’ର କାର୍ଯ୍ୟକାରିତା ପାଇଁ ଉପଦେଶ ସଦସବୁ ଗଢ଼ା ହେବା ଉଚିତ । ସ୍ୱାସ୍ଥ୍ୟ, ଆର୍ଥିକ ବା ସାମାଜିକ ଅବସ୍ଥାର ବଶରୁ କର ସ୍ତ୍ରୀ ବା ପୁରୁଷ ବା ଉଭୟଙ୍କ ଉପରେ ସଂସର୍ଗ-କାଳରେ ଶୁକ୍ରାଣୁ ବା ଡିମ୍ବାଣୁବିହୀନ ଅବସ୍ଥା କରାଯାଇ ପାରିବ ସେଥିପାଇଁ ଉପଦେଶ ଦେବାକୁ ଓ ଦରକାର ହେଲେ ଅସ୍ତ୍ରୋପଚାର କରିବା ପାଇଁ ଦେଶର ସବୁ ଅଞ୍ଚଳେ ସୁବିଧା ଥିବା ଦରକାର । ଏ ସବୁ କଥାରେ ଲୋକେ ଓ ସରକାର—ଉଭୟଙ୍କ ସହଯୋଗ ଲୋଡ଼ା । ଡାକ୍ତର ଇତ୍ୟାଦି ସମାଜସେବୀ ଲୋକେ ଏଥିପାଇଁ ଆଗଭର ହୋଇ ପୂର୍ଣ୍ଣ ସହଯୋଗ କରିବା ଉଚିତ । ଅଳ୍ପ ମଧ୍ୟ ଶୁକ୍ରାଣୁ ବା ଡିମ୍ବାଣୁ-ବିହୀନ ଅବସ୍ଥା ଠିକ୍ ଭାବରେ ଆଣିବାକୁ ବିଶେଷ ଚିନ୍ତା, ଅନୁସନ୍ଧାନ ଓ ମୀମାଂସାର ପ୍ରୟୋଜନ । ଅତଏବ ସରକାରଙ୍କ ଧରି ଡାକ୍ତରମାନେ ଓ ସମାଜସେବୀ ଲୋକେ ( ଯେଉଁମାନେ ଦେଶର ସ୍ୱାସ୍ଥ୍ୟରକ୍ଷାର ଦାୟିତ୍ୱ ନିଅନ୍ତି ) ଜନ୍ମ-ନିୟନ୍ତ୍ରଣରେ ଲୋକଙ୍କୁ ଯଥେଷ୍ଟ ସାହାଯ୍ୟ କରିପାରିବେ ।

ଜନ୍ମପରେ ଜନ୍ମନିୟନ୍ତ୍ରଣ ସମ୍ବନ୍ଧରେ ଦେଶ ବିଦେଶରେ ଭିନ୍ନ ଭିନ୍ନ ପ୍ରକାର ଭାବନା, ଅଭିଜ୍ଞତା ଓ ଜ୍ଞାନ ପ୍ରଚଳିତ । ସେଥିରୁ ଅଳ୍ପ କେତେକ ତଥ୍ୟ ବିଜ୍ଞାନ-ସମ୍ମତ ନୀତି ଓ ପନ୍ଥାଦ୍ୱାରା ସ୍ୱୀକୃତ । ଆମ ଦେଶର ଲୋକେ ଜନ୍ମନିୟନ୍ତ୍ରଣ ସମ୍ପର୍କରେ ଅନେକ ଭିତ୍ତିହୀନ କଥା କହୁଥାନ୍ତି । ଏହି ବିଷୟରେ ପ୍ରକୃତ ସତ୍ୟ ଓ ଅସତ୍ୟଗୁଡ଼ିକ ଉପରେ ଲୋକେ ଜାଣିବେ ଓ ବୁଝିବେ ସେଥିପାଇଁ ପ୍ରଚାର ଆବଶ୍ୟକ ।

ଦେଶରେ ମିଳୁଥିବା ଦ୍ରବ୍ୟମାନଙ୍କରୁ ଜନ୍ମନିୟନ୍ତ୍ରଣର ଉପକରଣଗୁଡ଼ିକ ଉପରେ ସୁବିଧା ଓ ଶସ୍ତାରେ ତିଆରି ହେବ ତାର ସନ୍ଧାନ ହେବା ଉଚିତ । ସେ ଗୁଡ଼ିକ ଉପରେ ନିରାପଦରେ ବ୍ୟବହାର

କରାଯାଇ ପାରିବ ସେ ବିଷୟରେ ମଧ୍ୟ ଗବେଷଣା ଆବଶ୍ୟକ । ମୋଟାମୋଟି କହିବାକୁ ଗଲେ, ଦେଶରେ ଚଳିବାର ସ୍ଥାନ ନ ଥିଲାବେଳେ କେବଳ ସନ୍ତାନ-ସମ୍ପତ୍ତି ବଢ଼ାଇବା ମନୋଭାବ ଲୋକଙ୍କ ଭିତରୁ ଗୁଚିଯିବା ଉଚିତ । ଜନ୍ମନିୟନ୍ତ୍ରଣ କାହିଁକି ଲୋଡ଼ା ସେ କଥା ସାଧାରଣଲୋକେ ଭଲକରି ବୁଝିବା ଦରକାର । ଜନ୍ମନିୟନ୍ତ୍ରଣର ଭିନ୍ନ ଭିନ୍ନ ବ୍ୟବସ୍ଥା ଓ ଉପକରଣଗୁଡ଼ିକ କିପରି ଠିକଭାବରେ ବ୍ୟବହାର କରି ପାରିବେ ଏଥିପାଇଁ କ୍ଲିନିକ ବା ଶିକ୍ଷାଗାର ସବୁ ରହିବା ବାଞ୍ଛନୀୟ । "ଲୋକହିତ ଦୃଷ୍ଟିରୁ ଜନ୍ମନିରୋଧ ଦରକାର" ଏ କଥା ସାଧାରଣ ଲୋକଙ୍କର ବଦ୍ଧଧାରଣା ହେଲେ ଯାଇ ଜନ୍ମନିୟନ୍ତ୍ରଣରୁ ସୁଫଳ ମିଳିବାର ଆଶା କରାଯାଇ ପାରେ ।

× × × ×

ଜୀବର ସୃଷ୍ଟି ବିଷୟ ନେଇ ଲୋକଙ୍କର ଅନେକ ପ୍ରକାର ଭୁଲଧାରଣା ଅଛି । କିନ୍ତୁ ଜୀବତତ୍ତ୍ୱ ସମ୍ବନ୍ଧୀୟ ବୈଜ୍ଞାନିକ ଶିକ୍ଷା ଓ ଭାବନା ଦ୍ୱାରାହିଁ ଜୀବନର ଆରମ୍ଭ ପ୍ରକୃତରେ କିପରି ଓ କେଉଁଠି ହୁଏ ସେ କଥା ଠିକଭାବରେ ଜଣାପଡ଼େ । ବଞ୍ଚି ରହିବାକୁ ହେଲେ ଅନେକଗୁଡ଼ିଏ ଜୀବନୀ-ପ୍ରକ୍ରିୟା ଦରକାର, ଯଥା— ଖାଇବା, ପିଇବା, ଶୋଇବା, ମଳମୂତ୍ରତ୍ୟାଗ କରିବା, ବଢ଼ିବା ଇତ୍ୟାଦି । ଏ ଗୁଡ଼ିକ ମୌଳିକ ଜୀବଧର୍ମ । ଯୌନମିଳନ, ଗର୍ଭଧାରଣ, ପ୍ରସବ ଓ ସନ୍ତାନ ଲାଳନପାଳନ ମଧ୍ୟ ମୌଳିକ ଜୀବନ ପ୍ରକ୍ରିୟା ।

ଜନ୍ମବିଷୟରେ ଭୁଲ ଧାରଣା ସବୁ ଥିଲେ ସୁଦ୍ଧା ମନୁଷ୍ୟ ବହୁକାଳରୁ ଭାବିଆସିଛି "ଜନ୍ମ କିପରି ଓ କାହିଁକି ହୁଏ ।" ଏହି ପ୍ରଶ୍ନର ସମାଧାନ ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ଭାବନା ମଧ୍ୟ ଦେଇ ମନୁଷ୍ୟର କୌତୂହଳକୁ ଆଲୋଡ଼ିତ କରିଛି । କେହି

କେହି ଭାବୁଥିଲେ, "ଡିମ୍ବାଣୁ ବା ଶୁକ୍ରାଣୁ ଭିତରେ ଛୋଟ ଶିଶୁଟିଏ ମୋଡ଼ିମାଡ଼ି ହୋଇ ଥାଏ; ଜରାୟୁରେ ରହିବାର ଓ ବଢ଼ିବାର ସୁବିଧା ପାଇଲେ ଯଥାବିହିତ ଆକାର ପାଏ ।" "ଦୈବୀଶକ୍ତିରେ କେବଳ ଜନ୍ମର ଉତ୍ପତ୍ତି"—ଏକଥା ଅନେକଙ୍କର ବଦ୍ଧଧାରଣା ଥିଲା । "ସଂଗମ ପ୍ରକ୍ରିୟା ଓ ଘଟନାଗୁଡ଼ିକର ଗର୍ଭଧାରଣ ଓ ଜନ୍ମସଙ୍ଗେର ସମ୍ବନ୍ଧ" ଏ ବିଷୟଗୁଡ଼ିକ ଲୋକଙ୍କର ଭାବନାକୁ ଆସି ନ ଥିଲା । ମନୁଷ୍ୟର ଅନ୍ଧବିଶ୍ୱାସ ସହଜରେ ଯାଏ ନାହିଁ । ଅନ୍ଧବିଶ୍ୱାସ ବା ଭୁଲଧାରଣାଗୁଡ଼ିକ ଲୋକ ମନରୁ ଲିଭାଇବାକୁ ହେଲେ, ବୈଜ୍ଞାନିକ ଚିନ୍ତାଚିନ୍ତା, ବିଶ୍ଳେଷଣ ଏବଂ ଅଭିଜ୍ଞତାର ସାହାଯ୍ୟ ନେବାକୁ ହୁଏ । ପ୍ରଜନନ ଓ ତତ୍ ସମ୍ବନ୍ଧୀୟ ସତ୍ୟାସତ୍ୟଗୁଡ଼ିକ ବିଷୟରେ ସଠିକ ଭାବନା ମଧ୍ୟ ବୈଜ୍ଞାନିକ ବିଶ୍ଳେଷଣ ଓ ଅଭିଜ୍ଞତା ପାଇଁ ସମ୍ଭବ ହୋଇ ପାରିଛି । ସଭ୍ୟତା ରୁଚି, ଦେଶ, ଜାତି ଓ ଧର୍ମଭେଦରେ ସ୍ତ୍ରୀ ଓ ପୁରୁଷର ମିଳନପାଇଁ ବିବାହ ଇତ୍ୟାଦି ଧର୍ମାନୁଷ୍ଠାନର ଅବତାରଣା । ଧର୍ମବିବାହ ଛଡ଼ା ଅନ୍ୟାନ୍ୟ ପ୍ରକାର ଯୌନମିଳନଗୁଡ଼ିକରେ ଜନ୍ମସମ୍ଭବ ନୁହେଁ, ଏ କଥା ମଧ୍ୟ କାହାରି କାହାରି ଧାରଣାରେ ଅଛି । ଆଜି ମଧ୍ୟ ଜନ୍ମକୁ ଦୈବୀଶକ୍ତି ଭାବି ଜାତି, ଧର୍ମ ଓ ବିଶ୍ୱାସ ଭେଦରେ ଲିଙ୍ଗପୂଜାର ପ୍ରଚଳନ; ଲିଙ୍ଗ ଓ ଶକ୍ତିଯୋଗ ବିଶିଷ୍ଟ ଦେବମୂର୍ତ୍ତି, ସ୍ତ୍ରୀ ଓ ପୁରୁଷର ସଂଗମ ଓ ଜୀବ ସୃଷ୍ଟିର ପ୍ରତିରୂପକ । ଉପରୋକ୍ତ ମୀମାଂସାଗୁଡ଼ିକର ସତ୍ୟାସତ୍ୟ ନିର୍ଣ୍ଣୟ କରିବା ପୂର୍ବରୁ ପ୍ରାଣୀତତ୍ତ୍ୱର ଚିନ୍ତାଧାରା, ଅନୁଶୀଳନୀ ଓ ବିଶ୍ଳେଷଣର ଅଭିଜ୍ଞତାଗୁଡ଼ିକ ମଧ୍ୟ ଦେଇ ଭାବିଲେ ଦେଖାଯିବ, "ସ୍ତ୍ରୀ ଓ ପୁରୁଷ ସଂଗମରେ ଜନ୍ମ ସମ୍ଭବ ହୁଏ"—ଧର୍ମ, ଅସୁର, ଉପଗ୍ରହ, ଲିଙ୍ଗପୂଜା କାରଣ ପାଇଁ ନୁହେ । ଆଜି ଗର୍ଭଧାରଣ ବା ନୂଆ ଜୀବନର ଆରମ୍ଭ ହୁଏ, ଡିମ୍ବାଣୁ ଓ ଶୁକ୍ରାଣୁର ମିଳନରେ ବା ନିଷେକ ପ୍ରଣାଳୀରେ ।

ଏହି ପ୍ରବନ୍ଧରେ ଡିମ୍ବାଣୁ ଓ ଶୁକ୍ରାଣୁର ଉତ୍ପତ୍ତି, ବୃଦ୍ଧି, ସ୍ଥିତି ଓ ମିଳନର ଘଟନାଗୁଡ଼ିକ ସଙ୍ଗେ ଜନ୍ମନିୟନ୍ତ୍ରଣ ପ୍ରଣାଳୀର ସମ୍ବନ୍ଧ ଦେଖାଇବାକୁ ହେବ ।

୧୬୭୨ ମସିହା ପର୍ଯ୍ୟନ୍ତ "ମନୁଷ୍ୟର ଭ୍ରୂଣକୋଷଗୁଡ଼ିକ କପର, ଏ କଥା ବୈଜ୍ଞାନିକମାନେ ଧାରଣା କରି ପାରି ନ ଥିଲେ; ଡି ଗ୍ରାଫ (de Graaf) ନାମକ ଜଣେ ଇଟାଲୀୟ କର୍ମୀ ପ୍ରଥମେ ମନୁଷ୍ୟର ଡିମ୍ବାଣୁ (Human Ovum) ଦେଖିଥିଲେ । ଏହି ଘଟନାର ପ୍ରାୟ ପାଞ୍ଚବର୍ଷ ପରେ ହ୍ୟାମ (Hamm) ଓ ଲିଉଏନହକ (Leuwenhock) ନାମରେ ଦୁଇଜଣ ହଲଣ୍ଡ ଦେଶୀୟ କର୍ମୀ ମନୁଷ୍ୟର ଶୁକ୍ରାଣୁ ( Human Spermatozoa ) ଆବିଷ୍କାର କଲେ । ତା'ପରେ ଶୁକ୍ରାଣୁ ଓ ଡିମ୍ବାଣୁର ଇତିବୃତ୍ତି ଗୁଡ଼ିକରୁ ଅନେକ କଥା ଜଣାଥିଲେ ସୁଦ୍ଧା ୧୭୩୦ ମସିହାରେ ପ୍ରଥମେ ସ୍ପାଲଞ୍ଜନି (Spallanzine) ଦେଖାଇଥିଲେ;— "ଡିମ୍ବାଣୁ ଓ ଶୁକ୍ରାଣୁର ମିଳନରେ ନୂଆ ଜୀବନର ଆରମ୍ଭ ହୁଏ ।" ଏ ଆଲୋଚନାଗୁଡ଼ିକରୁ ସହଜରେ ବୁଝାପଡ଼େ—ପ୍ରଜନନ କପର ଜୀବତତ୍ତ୍ୱ ନିୟମାବଳୀର ପୁରାପୁରି ଅନ୍ତର୍ଗତ । ଏହି ସମୟରେ ଭଲଫ (Wolff) ବୋଲି ଜଣେ ଜର୍ମାନ ଦେଶୀୟ କର୍ମୀ ସନ୍ଦେହ କଲେ, "ଡିମ୍ବାଣୁ ବା ଶୁକ୍ରାଣୁ ପରି ଏତେ କ୍ଷୁଦ୍ରାକାରରେ ଗୋଟିଏ ଶିଶୁଟିଏ ମୋଡ଼ିମାଡ଼ି ହୋଇ ରହିବା ସମ୍ଭବ ନୁହେ ।" ଏହି ଭାବଧାରାର ବଶବର୍ତ୍ତୀ ହୋଇ ଭିନ୍ନ ଭିନ୍ନ ଅନୁଶୀଳନୀ ଓ ଅଭିଜ୍ଞତା ମଧ୍ୟଦେଇ ସେ ଦେଖାଇଥିଲେ—"ନିଷିକ୍ତ ଡିମ୍ବାଣୁର କ୍ରମବୃଦ୍ଧି ଛଡ଼ା ଆଉ କୌଣସି ଉପାୟରେ ନୂଆଜନ୍ମ ସମ୍ଭବ ହୋଇପାରେ ନାହିଁ—ଅବଶ୍ୟ କେତେକ ତଳସ୍ତରର ପ୍ରାଣୀଙ୍କୁ ଛାଡ଼ି ।" ଏହି ଅନୁଶୀଳନୀ ଓ ତଥ୍ୟ ବିଶ୍ୱାସ କଲାପରେ ପ୍ରାୟ

ଶହେବର୍ଷକାଳ ଲୋକେ ଭ୍ରୂଣବୃଦ୍ଧି ଇତ୍ୟାଦି ବିଷୟରେ କୌଣସି ବିଶେଷ ଚିନ୍ତା କରି ନ ଥିଲେ । ୧୭୭୫ ମସିହା ଆଡ଼କୁ ଉଇଲିୟମ୍ ହଣ୍ଟର (William Hunter) ନାମକ ଜଣେ ଇଂରାଜ ଡାକ୍ତର ହରିଣୀ ଗର୍ଭସ୍ଥ ଶିଶୁକୁ ଦେଖି ଭ୍ରୂଣର କ୍ରମ-ବୃଦ୍ଧି ବିଷୟ ଚିନ୍ତା କରିଥିଲେ । ଜସ୍ପୁରେ ମନୁଷ୍ୟ-ଭ୍ରୂଣ ଉପରି ଭହେ ଓ ବହେ. ସେ ବିଷୟରେ ହଣ୍ଟର କେତେକ ଉତ୍କୃଷ୍ଟ ପ୍ରମାଣ ସଂଗ୍ରହ କରି ରଖିଯାଇଛନ୍ତି । ଏ ଘଟନାର ପୂର୍ଣ୍ଣ ଶହେବର୍ଷ ପରେ ଭିଲହେଲମ ହିଜ (Wilhelm His) ବୋଲି ଅନ୍ୟ ଜଣେ ଜର୍ମାନ କର୍ମୀ ମନୁଷ୍ୟ ଭ୍ରୂଣର ଗଠନ ଓ କ୍ରମବୃଦ୍ଧି ( Anatomy of Human embryo ) ବିଷୟରେ କେତେକ ମୌଳିକ ବୈଜ୍ଞାନିକ ସୂଚନା ତଥ୍ୟ ଓ ଅନ୍ୟାନ୍ୟ ସତ୍ୟାସତ୍ୟ ବିବରଣୀ ଲିପିବଦ୍ଧ କରି ଯାଇଛନ୍ତି । ଏହି ସମୟଠାରୁ ପ୍ରାୟ ଅର୍ଦ୍ଧଶତାବ୍ଦି କାଳ ବର୍ଣ୍ଣ (Born), କେବେଲ (Keibel), ମିନଟ୍ (minot), ମଲ (mall) ଇତ୍ୟାଦି ନାମଧେୟ ଅନେକ ଇଉରୋପୀୟ ଓ ଆମେରିକା ଦେଶୀୟ ଭ୍ରୂଣତତ୍ତ୍ୱବିତ୍ ମନୁଷ୍ୟଭ୍ରୂଣ ବିଷୟରେ ପୁଂଖାନୁପୁଂଖ ଗବେଷଣା କରି ମନୁଷ୍ୟଭ୍ରୂଣର ଜନନ, ସ୍ଥାପନ ଓ କ୍ରମବର୍ଦ୍ଧନର ନିଗୂଢ଼ତତ୍ତ୍ୱଗୁଡ଼ିକ ପର ପର ଲେଖି ଯାଇଛନ୍ତି । ଅଧୁନା ମଧ୍ୟ ସେହି ପ୍ରେରଣାରେ ଷ୍ଟ୍ରିଟର (Streeter), କରନର (Corner), ହ୍ୟୁସର (Heuser), ବର୍ଣ୍ଣସ୍ (Burns) ଇତ୍ୟାଦି ଭ୍ରୂଣତତ୍ତ୍ୱବିତ୍‌ମାନେ ଆମେରିକାର କାରନେଗୀ ଅନୁଷ୍ଠାନରେ (Carnegie In[illegible]on of embryology Baltimore U. S. A.) ହଜାର [illegible]ଜାର ଅଣୁବୀକ୍ଷଣିକ ମନୁଷ୍ୟ ଭ୍ରୂଣର ବିଶେଷ ବିବରଣୀଗୁଡ଼ିକ ସଂଗ୍ରହ କରିବାକୁ ଅକ୍ଳାନ୍ତ ପରିଶ୍ରମ କରୁଅଛନ୍ତି । ଲେଖକ ସେହି କାରନେଗୀ ଇନ୍‌ଷ୍ଟିଚ୍ୟୁଟରେ କାମ କରିବା ସମୟରେ ପ୍ରାୟ ୮୦୦ ମନୁଷ୍ୟଭ୍ରୂଣର ଇତିବୃତ୍ତ ପରୀକ୍ଷା

କରିବାର ସୁବିଧା ପାଇଥିଲେ । ସେହି ଅନୁଷ୍ଠାନରେ ମନୁଷ୍ୟଭ୍ରୂଣ ବିଷୟ ନେଇ ପ୍ରାୟ ୨୦,୦୦୦ କାଚଖଣ୍ଡ ( microscopic slides ) ତାଲିକାଭୁକ୍ତ ହୋଇଅଛି ( Indexed ) ।

ମନୁଷ୍ୟର ଅତି ଛୋଟ ଭ୍ରୂଣ ପାଇବା, ଦେଖିବା ବା ପରୀକ୍ଷା କରିବା କଷ୍ଟକର । ଉପରୋକ୍ତ କାରନେଗୀ ଇନଷ୍ଟିଚ୍ୟୁସନରେ ପ୍ରାୟ ୪½ ଦିନ ବୟସର ନିଷିକ୍ତ ଡିମ୍ବାଣୁ ପରୀକ୍ଷିତ ହେବାର ବର୍ଣ୍ଣନା ମିଳେ । ମନୁଷ୍ୟ ଭ୍ରୂଣର ବୃଦ୍ଧିର ପ୍ରଥମ ଅବସ୍ଥାରେ ବୟସ ନିର୍ଣ୍ଣୟ କରିବା ଆଜି ପର୍ଯ୍ୟନ୍ତ ଗୋଟାଏ ବଡ଼ ମୀମାଂସାର ପ୍ରଶ୍ନ । ଭ୍ରୂଣ-ତତ୍ତ୍ୱସମ୍ବନ୍ଧୀୟ ଉପରୋକ୍ତ ଖଣ୍ଡ-ଇତିହାସରୁ ବୁଝାପଡ଼ିବ ଯେ ମନୁଷ୍ୟ ଭ୍ରୂଣ ବିଷୟରେ ଅନେକ ଜଟିଳ ତତ୍ତ୍ୱ ଆଜିପର୍ଯ୍ୟନ୍ତ ଅନାବିଷ୍କୃତ ଅବସ୍ଥାରେ ଅଛି ।

ନିଷିକ୍ତ ଭ୍ରୂଣର ଉତ୍ପାଦନ, ଗଠନ ଓ କ୍ରମବୃଦ୍ଧି ଆଲୋଚନାରେ ସ୍ୱତଃ ଆସେ—ଡିମ୍ବାଣୁ, ଶୁକ୍ରାଣୁ, ଡିମ୍ବକୋଷ, ଶୁକ୍ରକୋଷ ଓ ଅନ୍ୟାନ୍ୟ ଅନ୍ତଃ ଜନନେନ୍ଦ୍ରିୟଗୁଡ଼ିକର ବିଷୟ । ଜନନେନ୍ଦ୍ରିୟର ଅନୁଷ୍ଠାନ, ଗଠନ ଓ କାର୍ଯ୍ୟ ପରସର ନେଇ ସେଗୁଡ଼ିକ ବିବିଧ ଅଂଶରେ ବିଭକ୍ତ, ଯଥା:—

(୧) ଶୁକ୍ରାଣୁ ଓ ଡିମ୍ବାଣୁର ଜନନ, ରକ୍ଷଣ ଓ ପରିପୋଷଣ ପାଇଁ ଶୁକ୍ରକୋଷ (Testis) ଓ ଡିମ୍ବକୋଷ (Ovary) ।

(୨) ଶୁକ୍ରାଣୁ ଓ ଡିମ୍ବାଣୁର ବହିଃସ୍ଥରଣ ପାଇଁ ନାଳୀ (କ) ଶୁକ୍ରନାଳୀ (Vas deferens); (ଖ) ଡିମ୍ବନାଳୀ (Oviduct Fallopian tube or Uterine tube) ।

(୩) ଶୁକ୍ରାଣୁଗୁଡ଼ିକୁ ଉପଯୁକ୍ତ ଅବସ୍ଥାରେ ରଖି ସେ ଗୁଡ଼ିକୁ କ୍ଷିପ୍ର-ଗତିଯୁକ୍ତ କରାଇବା ପାଇଁ (କ) ଯନ୍ତ୍ର ବା ଆଶୟ (Seminal vesicles ) ଓ (ଖ) ମୂତ୍ରାଶୟୀ ଗ୍ରନ୍ଥି (Prostate) ।

(୪) କ୍ଷିପ୍ର ଗତିଯୁକ୍ତ ଶୁକ୍ରାଣୁଗୁଡ଼ିକର ବହିଃସରଣ ପାଇଁ ଲିଙ୍ଗସ୍ଥ ନାଳୀ ଓ ତତ୍ ସଂଲଗ୍ନ ଗ୍ରନ୍ଥିସବୁ (Urethra and its Glands)। (ଏହି ନାଳୀ ମୂତ୍ରତ୍ୟାଗରେ ମଧ୍ୟ ବ୍ୟବହୃତ ହୁଏ)।

(୫) ନିଷିକ୍ତ ଡିମ୍ବାଣୁର ସଂସ୍ଥାପନ ଓ ରକ୍ଷଣାବେକ୍ଷଣ ପାଇଁ ଉପଯୁକ୍ତ ସ୍ଥାନ, ଅଶୟ, ଗର୍ଭାଶୟ ବା ଜରାୟୁ ଗହ୍ବର (Uterus) ଓ ଜରାୟୁ ମୁଖ ବା ଗ୍ରୀବା (Cervix)।

(୬) ବୀର୍ଯ୍ୟ ବା କ୍ଷିପ୍ର-ଗତି-ଯୁକ୍ତ ଶୁକ୍ରାଣୁସବୁ ସ୍ତ୍ରୀଯୋନିର ଉପରିଭାଗରେ ରଖିବା ପାଇଁ ପୁରୁଷର ଇନ୍ଦ୍ରିୟ (Penis)।

(୭) ସ୍ତ୍ରୀଯୋନି ଗହ୍ବର ଓ ମୁଖ (Vaginal cavity and vestibule) ଓ ତତ୍ ସଂଲଗ୍ନ ଗ୍ରନ୍ଥିସବୁ।

(୮) ସ୍ତ୍ରୀ-ଇନ୍ଦ୍ରିୟ (Glitoris)।

(ଉପରୋକ୍ତ ବିଷୟଗୁଡ଼ିକ ୧ ଠାରୁ ୫ ନମ୍ବର ଚିତ୍ର ସବୁ ଆଲୋଚନା କଲେ ବୁଝା ପଡ଼ିବ)।

ଭ୍ରୂଣଗଠନର ପ୍ରଥମାବସ୍ଥାରେ, ସ୍ତ୍ରୀ ଓ ପୁରୁଷ ଲିଙ୍ଗଗ୍ରନ୍ଥି (Gonads) ଗୁଡ଼ିକର ଲିଙ୍ଗ ନିର୍ଣ୍ଣୟ ବା ନିର୍ଦ୍ଧାରିତ ହୋଇ ନ ଥାଏ।



୬ ନମ୍ବର ଚିତ୍ର (ବ) ତିନିମାସର ଭ୍ରୂଣ




୨ନମ୍ବର ଚିତ୍ର (ଖ)

ପ୍ରଜନନତତ୍ତ୍ୱବିତ୍‌ମାନେ କହନ୍ତି ଯେ ନିଷିକ୍ତ ଭ୍ରୂଣ ଯେଉଁଠାରେ କାଳ ବଢ଼ି ଚାରିକୋଷ ବିଶିଷ୍ଟ ହେଲା ବେଳକୁ (Four cell stage) ଗୋଟିଏ କୋଷର ଭାବ ଓ ଅଙ୍କୁର ଅଲଗା ହୋଇଯାଏ ଓ ସେହି କୋଷଟି ଭବିଷ୍ୟତର ଶୁକ୍ରାଣୁ ବା ଡିମ୍ବାଣୁ ଗୁଡ଼ିକରେ ପରିଣତ ହୁଏ । ଏହି ଅଲଗା ଭାବର କୋଷଟିକୁ ଅନୁଧାବନ କଲେ ଦେଖାଯିବ ଯେ ନିଷିକ୍ତ ଭ୍ରୂଣ ବୃଦ୍ଧିର ପ୍ରାୟ ଦଶସପ୍ତାହ ପର୍ଯ୍ୟନ୍ତ ଲିଙ୍ଗ ରହିତ (Sex) କୋଷଗୁଡ଼ିକ (Cells) ଗୋଟିଏ ପ୍ରକାରର ଥାଏ । ୨ ନମ୍ବର ଚିତ୍ରରୁ ବୁଝାଯାଉଛି ଯେ ଲିଙ୍ଗ କୋଷଗୁଡ଼ିକ ଭ୍ରୂଣର ବାହାରୁ କେଉଁ ବାଟେ ଦେଇ ଭ୍ରୂଣର ଭିତରକୁ ଯାଇ ଲିଙ୍ଗଗ୍ରନ୍ଥିରେ ପହଞ୍ଚନ୍ତି । ଏହି ଅବସ୍ଥାରେ ଲିଙ୍ଗଗ୍ରନ୍ଥିସ୍ଥ କୋଷକୁ ଦେଖି କହି ହେବ ନାହିଁ ଯେ ସେହି ଲିଙ୍ଗକୋଷଗୁଡ଼ିକ ଶୁକ୍ରାଣୁ କୋଷରେ ବା ଡିମ୍ବାଣୁ କୋଷରେ ପରିଣତ ହେବ । (୭ ଓ ୮ ନମ୍ବର ଚିତ୍ରଗୁଡ଼ିକ ବିଶ୍ଳେଷଣ କଲେ ଅବିକଶିତ ଜନନେନ୍ଦ୍ରିୟଗୁଡ଼ିକ କିପରି ପୁରୁଷ ଓ ସ୍ତ୍ରୀ ଜନନେନ୍ଦ୍ରିୟରେ ପରିଣତ

ହେଉଛି ସେ କଥା ବୁଝାପଡ଼ିବ । ୮ ନମ୍ବର ଚିତ୍ରରେ ଦେଖାଯାଉ ଅଛି ଯେ ପ୍ରଥମାବସ୍ଥାରେ ପୁରୁଷ ଓ ସ୍ତ୍ରୀର ଜନନେନ୍ଦ୍ରିୟ-




୮ନମ୍ବରଚିତ୍ର

ଗୁଡ଼ିକର କୌଣସି ବିଶେଷ ପାର୍ଥକ୍ୟ ନ ଥାଏ । ଭାବ ଓ କାର୍ଯ୍ୟ ନେଇ ସେଗୁଡ଼ିକ ଭିନ୍ନ ଭିନ୍ନ ଆକାର ପାଇଥାଆନ୍ତି) ।

ଗର୍ଭସ୍ଥ-ଭ୍ରୂଣକୁ ତିନିମାସ ହେଲେ ପରେ ଲିଙ୍ଗ-ଗ୍ରନ୍ଥିଗୁଡ଼ିକର (Sex glands or Gonads) ଲିଙ୍ଗ-ଭେଦ (sex Differentiation) ହୁଏ । ଶୁକ୍ରକୋଷ, (ଶୁକ୍ରାଶୟ, ମୁଷ୍କ ବା ଅଣ୍ଡ Testis ), ଶୁକ୍ରାଣୁ (Spermatozoa ) ଓ ଡିମ୍ବକୋଷ ବା ଡିମ୍ବାଶୟ ( Ovary ), ଡିମ୍ବାଣୁ ( Ovum ) ଉତ୍ପାଦନ କରେ । ଭ୍ରୂଣର ତିନିମାସ ବୟସରୁ ଯୌବନପର୍ଯ୍ୟନ୍ତ (ମୋଟାମୋଟି ସାଢ଼େ ବାରବର୍ଷରୁ ସାଢ଼େ ପନ୍ଦର ବର୍ଷ ସମୟ ) ଶୁକ୍ରକୋଷ ବା ଡିମ୍ବକୋଷରେ ଶୁକ୍ରାଣୁ ଓ ଡିମ୍ବାଣୁଗୁଡ଼ିକ ଥିଲେ ସୁଦ୍ଧା ସେ ଗୁଡ଼ିକର ବହିଷ୍କରଣ ହୁଏ ନାହିଁ ।

ଶୁକ୍ରାଣୁ ବା ଡିମ୍ବାଣୁ ପର ଲିଙ୍ଗ-କୋଷଗୁଡ଼ିକର ଆକାର, ଭାବ, ଜନ୍ମ, ଗଠନ, ସ୍ଥାପନ, କ୍ରମବୃଦ୍ଧି ଓ ଅନ୍ୟାନ୍ୟ କାର୍ଯ୍ୟସମ୍ପାଦନ ଅନ୍ୟାନ୍ୟ ଶରୀରକୋଷର ସଦୃଶ ଓ ସମାନ୍ତରାଳ ଘଟନାଗୁଡ଼ିକଠାରୁ ପୃଥକ୍ । ମନୁଷ୍ୟ ପୂର୍ଣ୍ଣବୟସ୍କ ହେଲା ପର୍ଯ୍ୟନ୍ତ ବଢୁଥାଏ । ଶରୀରକୋଷଗୁଡ଼ିକ ଆନୁଷ୍ଠାନିକ ଭାବରେ ଏହି ବଢ଼ିବା ଘଟନା ଓ ଅବସ୍ଥାଗୁଡ଼ିକୁ ସାହାଯ୍ୟ କରନ୍ତି । କିନ୍ତୁ ଲିଙ୍ଗକୋଷ-ଗୁଡ଼ିକ ଅନ୍ୟ ପ୍ରକାରରେ ବଢ଼ନ୍ତି । ଶିଶୁ ଜନ୍ମ ହେଲାବେଳେ ଲିଙ୍ଗକୋଷଗୁଡ଼ିକ ଯେପରି ଅବସ୍ଥାରେ ଥାଏ, ଯୌବନର ଅବ୍ୟବହିତ କାଳପର୍ଯ୍ୟନ୍ତ ସେହିପରି ଥାଏ । ଜନନଶକ୍ତି ଆସିଲେ ଯୌବନର ଆରମ୍ଭ ହୁଏ । ଯୌବନଠାରୁ ପ୍ରାପ୍ତବୟସ୍କର ଶେଷକାଳ ପର୍ଯ୍ୟନ୍ତ ଲିଙ୍ଗକୋଷର ବୃଦ୍ଧି ହୁଏ । ତା ପରେ ସେଗୁଡ଼ିକର କ୍ଷୟ ହୁଏ । ଏହି ସବୁ କାରଣରୁ ଓ ଘଟନାରୁ ସହଜରେ ପ୍ରମାଣିତ ହୁଏ ଯେ ଯୌବନାବସ୍ଥାର ପୂର୍ବକାଳ ପର୍ଯ୍ୟନ୍ତ ସ୍ତ୍ରୀ ଓ ପୁରୁଷ କାହାର ଜନନଶକ୍ତି ନ ଥାଏ ଓ ସେହି ସମୟ ପର୍ଯ୍ୟନ୍ତ ଶୁକ୍ରାଣୁ ବା ଡିମ୍ବାଣୁର ବହିଷ୍କରଣ ହୁଏ ନାହିଁ ।

ଏହି ସବୁ ମୌଳିକ ମୀମାଂସାରେ ବିଶ୍ୱାସ କରି ବୈଜ୍ଞାନିକମାନେ ମତ ଦିଅନ୍ତି ଯେ ଉତ୍କୃଷ୍ଟରୁ ଉତ୍କୃଷ୍ଟତର ମନୁଷ୍ୟଜାତି ଗଢ଼ିବାକୁ ହେଲେ ଶୁକ୍ରାଣୁ ଓ ଡିମ୍ବାଣୁ ଇତ୍ୟାଦି କୋଷଗୁଡ଼ିକର ସଯତ୍ନପାଳନ ଓ ରକ୍ଷଣ ବିଧେୟ ।

ଏ ସବୁ କଥା ସାଧାରଣ ଲୋକେ ବୁଝି ଚିନ୍ତା ନ କଲା ପର୍ଯ୍ୟନ୍ତ ଖାଦ୍ୟ ଇତ୍ୟାଦି ମୌଳିକ ଓ ପାରିପାର୍ଶ୍ୱିକ ଅବସ୍ଥାକୁ ଦେଖି ଜନ୍ମ-ନିୟନ୍ତ୍ରଣ ପ୍ରକ୍ରିୟାଗୁଡ଼ିକୁ କାର୍ଯ୍ୟକାରୀ କରିବାକୁ ସକ୍ଷମ ହେବେ ନାହିଁ । ଜନ୍ମନିୟନ୍ତ୍ରଣର ପ୍ରକ୍ରିୟାଗୁଡ଼ିକ ଅନେକ ପ୍ରକାର । କେବଳ ଗୋଟିଏ ମାତ୍ର ପ୍ରକ୍ରିୟା ସମସ୍ତଙ୍କ ପକ୍ଷରେ ପ୍ରଯୁଜ୍ୟ ନୁହେ କିମ୍ବା

ସମସ୍ତେ ଏକାପ୍ରକାର ଯୌନ ସଙ୍ଗମ ଅଭ୍ୟାସ କଲେ ଜନ୍ମନିୟନ୍ତ୍ରଣ ପ୍ରକ୍ରିୟାଗୁଡ଼ିକରୁ ସୁଫଳ ପାଇ ପାରିବେ ନାହିଁ । ଏହି ସବୁ କାରଣରୁ ଲିଙ୍ଗ ଓ ଜନନେନ୍ଦ୍ରିୟଗୁଡ଼ିକର ବିଶେଷ ଜ୍ଞାନ ଏବଂ ଶୁକ୍ରାଣୁ ଓ ଡିମ୍ବାଣୁର ଉତ୍ପତ୍ତି, ସ୍ଥିତି, ସଂରକ୍ଷଣ, ମିଳନ ଇତ୍ୟାଦି ଘଟଣାର ସବିଶେଷ ବିବରଣୀ ସାଧାରଣ ଲୋକଙ୍କ ବୋଧଗମ୍ୟ ହେବା ଉଚିତ । ତା'ହେଲେ ସେମାନଙ୍କର ନିଜ ନିଜ ପାଇଁ ଜନ୍ମନିୟନ୍ତ୍ରଣର କେଉଁ କେଉଁ ପ୍ରକ୍ରିୟାଗୁଡ଼ିକ ଲୋଡ଼ା ସେ କଥା ସେମାନେ ନିଜେ ଭାବିପାରିବେ । ଅତଏବ ଜନନେନ୍ଦ୍ରିୟର ଗଠନ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଉପରେ ଜନ୍ମନିୟନ୍ତ୍ରଣର ଭିନ୍ନ ଭିନ୍ନ ପ୍ରୟୋଗ (Application) ଓ ଉପକରଣ ( Implement )ର ବ୍ୟବହାର ନିର୍ଭର କରେ ।

ଡିମ୍ବାଣୁର ନିଷେକ ଘଟଣାରୁ ଆରମ୍ଭ କରି ଲିଙ୍ଗକୋଷର ପୃଥକ୍ ସତ୍ତା ଓ କାର୍ଯ୍ୟସମ୍ପାଦନ ହେବା ପର୍ଯ୍ୟନ୍ତ ସେ ଗୁଡ଼ିକର ଭାବ ଓ ବୃଦ୍ଧି ଅନ୍ୟାନ୍ୟ ଶରୀରକୋଷ ସଦୃଶ ଓ ସମାନ୍ତରାଳ ଘଟଣାଗୁଡ଼ିକ ଠାରୁ ପୃଥକ୍, ଏ ବିଷୟ ଉପରୋକ୍ତ ଚିତ୍ରଗୁଡ଼ିକରୁ ବୁଝିହେବ । ଭ୍ରୂଣର ଛଅ ସପ୍ତାହ ବୟସ ବେଳକୁ ଆଦିମ (Primordial ) ଲିଙ୍ଗକୋଷଗୁଡ଼ିକ ଲିଙ୍ଗଗ୍ରନ୍ଥିରେ ପହଞ୍ଚିଯାଆନ୍ତି । ଛଅ ସପ୍ତାହ ଠାରୁ ତିନି ମାସ ପର୍ଯ୍ୟନ୍ତ ସେହି ଆଦିମ ଲିଙ୍ଗକୋଷ-ଗୁଡ଼ିକର ଲିଙ୍ଗଗ୍ରନ୍ଥିରେ ସଂଗଠନ, ବୃଦ୍ଧି ଓ ସଂରକ୍ଷଣ ହୁଏ ଏବଂ ଶେଷରେ ସେମାନେ ପୁଂ ବା ସ୍ତ୍ରୀ ଲିଙ୍ଗକୋଷର ଆକାର ଓ ଭାବ ଧାରଣ କରନ୍ତି । ଏହି ପୁଂ ବା ସ୍ତ୍ରୀ ଲିଙ୍ଗ କୋଷଗୁଡ଼ିକ ଯୌବନାବସ୍ଥାର ଶୁକ୍ରାଣୁ ବା ଡିମ୍ବାଣୁ । ଏହି ସମୟରେ ଶୁକ୍ରାଣୁ ଓ ଡିମ୍ବାଣୁର ବହିଃସ୍ଖଳନ ପାଇଁ ନାଳୀଗୁଡ଼ିକ ମଧ୍ୟ ତିଆରି ହୁଏ । ଲିଙ୍ଗଗ୍ରନ୍ଥି ଶୁକ୍ରକୋଷରେ ପରିଣତ ହେଲେ ଡିମ୍ବାଣୁ ପାଇଁ ଅବଧାରିତ ନାଳୀଗୁଡ଼ିକ ଅପକାତ ହୋଇ କ୍ଷୟପ୍ରାପ୍ତ ହୁଏ; କିମ୍ବା ଲିଙ୍ଗଗ୍ରନ୍ଥି

ଡିମ୍ବକୋଷରେ ପରିଣତ ହେଲେ ଶୁକ୍ରାଣୁ ପାଇଁ ଅବଧାରିତ ଗ୍ରନ୍ଥି-ଗୁଡ଼ିକର କ୍ଷୟ ହୁଏ । ଶୁକ୍ରାଣୁ ବା ଡିମ୍ବାଣୁର ବହିଃସ୍ଖଳନର



ଜଣିକୋଷର ପ୍ରଥମ ସ୍ଥାନ      ସ୍ତ୍ରୀ      ପୁରୁଷ

୧୦ନମ୍ବର ଚିତ୍ର

ଶୁକ୍ରକୋଷର ବୃଦ୍ଧି



୭ ମାସ ଭ୍ରୁଣ      ନବଜାତ

୧୧ନମ୍ବର ଚିତ୍ର

ଗ୍ରନ୍ଥିଗୁଡ଼ିକ ସୁଗମ ଓ ସୁନିୟନ୍ତ୍ରିତ ରଖିବା ପାଇଁ ଯେଉଁ ସବୁ ସ୍ରାବ ଓ ଗ୍ରନ୍ଥିର ପ୍ରୟୋଜନ ସେ ସବୁର ଉପସ୍ଥାପନ ଏହି ସମୟରେ ହୁଏ ।

ଡିମ୍ବାଣୁ ପାଇଁ ତିଆରି ନାଳୀ ଦୁଇଟିର ତଳଭାଗର ମିଳନରେ ଜରାୟୁର ସଂଗଠନ ହୁଏ ଓ ଅନ୍ୟାନ୍ୟ ବୃଦ୍ଧି ପ୍ରକ୍ରିୟାଦ୍ୱାରା ସବୁଠୁଁ ତଳଭାଗ ସ୍ତ୍ରୀଯୋନିରେ ପରିଣତ ହୁଏ । ଶୁକ୍ରାଣୁ ପାଇଁ ତିଆରି ନାଳୀଦୁଇଟି କ୍ରମେ ଅଲଗା ଅଲଗା ଜାଗାରେ ମୂତ୍ରନାଳୀରେ ମିଳିତ

ସମସ୍ତେ ଏକାପ୍ରକାର ଯୌନ ସଙ୍ଗମ ଅଭ୍ୟାସ କଲେ ଜନ୍ମନିୟନ୍ତ୍ରଣ ପ୍ରକ୍ରିୟାଗୁଡ଼ିକରୁ ସୁଫଳ ପାଇ ପାରିବେ ନାହିଁ। ଏହି ସବୁ କାରଣରୁ ଲିଙ୍ଗ ଓ ଜନନେନ୍ଦ୍ରିୟଗୁଡ଼ିକର ବିଶେଷ ଜ୍ଞାନ ଏବଂ ଶୁକ୍ରାଣୁ ଓ ଡିମ୍ବାଣୁର ଉତ୍ପତ୍ତି, ସ୍ଥିତି, ସଂରକ୍ଷଣ, ମିଳନ ଇତ୍ୟାଦି ଘଟଣାର ସବିଶେଷ ବିବରଣୀ ସାଧାରଣ ଲୋକଙ୍କ ବୋଧଗମ୍ୟ ହେବା ଉଚିତ। ତା'ହେଲେ ସେମାନଙ୍କର ନିଜ ନିଜ ପାଇଁ ଜନ୍ମନିୟନ୍ତ୍ରଣର କେଉଁ କେଉଁ ପ୍ରକ୍ରିୟାଗୁଡ଼ିକ ଲୋଡ଼ା ସେ କଥା ସେମାନେ ନିଜେ ଭାବିପାରିବେ। ଅଙ୍ଗମଧ୍ୟ ଜନନେନ୍ଦ୍ରିୟର ଗଠନ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଉପରେ ଜନ୍ମନିୟନ୍ତ୍ରଣର ଭିନ୍ନ ଭିନ୍ନ ପ୍ରୟୋଗ (Application) ଓ ଉପକରଣ ( Implement )ର ବ୍ୟବହାର ନିର୍ଭର କରେ।

ଡିମ୍ବାଣୁର ନିଷେକ ଘଟଣାରୁ ଆରମ୍ଭ କରି ଲିଙ୍ଗକୋଷର ପୂର୍ଣ୍ଣାବସ୍ଥା ଓ କାର୍ଯ୍ୟସମ୍ପାଦନ ହେବା ପର୍ଯ୍ୟନ୍ତ ସେ ଗୁଡ଼ିକର ଭାବ ଓ ବୃଦ୍ଧି ଅନ୍ୟାନ୍ୟ ଶରୀରକୋଷ ସଦୃଶ ଓ ସମାନ୍ତରାଳ ଘଟଣାଗୁଡ଼ିକ ଠାରୁ ପୃଥକ୍, ଏ ବିଷୟ ଉପରୋକ୍ତ ଚିତ୍ରଗୁଡ଼ିକରୁ ବୁଝାପଡ଼ିବ। ଭ୍ରୂଣର ତିନି ସପ୍ତାହ ବୟସ ବେଳକୁ ଆଦିମ (Primordial ) ଲିଙ୍ଗକୋଷଗୁଡ଼ିକ ଲିଙ୍ଗଗ୍ରନ୍ଥିରେ ପହଞ୍ଚିଯାଆନ୍ତି। ତିନି ସପ୍ତାହ ଠାରୁ ତିନି ମାସ ପର୍ଯ୍ୟନ୍ତ ସେହି ଆଦିମ ଲିଙ୍ଗକୋଷ-ଗୁଡ଼ିକର ଲିଙ୍ଗଗ୍ରନ୍ଥିରେ ସଂଗଠନ, ବୃଦ୍ଧି ଓ ସଂରକ୍ଷଣ ହୁଏ ଏବଂ ଶେଷରେ ସେମାନେ ପୁଂ ବା ସ୍ତ୍ରୀ ଲିଙ୍ଗକୋଷର ଆକାର ଓ ଭାବ ଧାରଣ କରନ୍ତି। ଏହି ପୁଂ ବା ସ୍ତ୍ରୀ ଲିଙ୍ଗ କୋଷଗୁଡ଼ିକ ଯୌବନାବସ୍ଥାର ଶୁକ୍ରାଣୁ ବା ଡିମ୍ବାଣୁ। ଏହି ସମୟରେ ଶୁକ୍ରାଣୁ ଓ ଡିମ୍ବାଣୁର ବହିଃସ୍ଖଳନ ପାଇଁ ନାଳୀଗୁଡ଼ିକ ମଧ୍ୟ ତିଆରି ହୁଏ। ଲିଙ୍ଗଗ୍ରନ୍ଥି ଶୁକ୍ରକୋଷରେ ପରିଣତ ହେଲେ ଡିମ୍ବାଣୁ ପାଇଁ ଅବଧାରିତ ନାଳୀଗୁଡ଼ିକ ଅପକାରିତ ହୋଇ କ୍ଷୟପ୍ରାପ୍ତ ହୁଏ; କିମ୍ବା ଲିଙ୍ଗଗ୍ରନ୍ଥି

ଡିମ୍ବକୋଷରେ ପରିଣତ ହେଲେ ଶୁକ୍ରାଣୁ ପାଇଁ ଅବଧାରିତ ଗ୍ରନ୍ଥା-ଗୁଡ଼ିକର କ୍ଷୟ ହୁଏ । ଶୁକ୍ରାଣୁ ବା ଡିମ୍ବାଣୁର ବହିଃସ୍ଖଳନର



ଲିଙ୍ଗକୋଷର ପ୍ରଥମ ସ୍ଥାନ   ସ୍ତ୍ରୀ   ପୁରୁଷ

୧୦ନମ୍ବର ଚିତ୍ର

ଲିଙ୍ଗକୋଷର କ୍ରମଗତି



୪ ' ୫ ଭ୍ରୂଣ   ୨ ମାସ ଭ୍ରୂଣ   ନବଜାତ

୧୧ନମ୍ବର ଚିତ୍ର

ଗ୍ରନ୍ଥାଗୁଡ଼ିକ ସୁଗମ ଓ ସୁନିୟନ୍ତ୍ରିତ ରଖିବା ପାଇଁ ଯେଉଁ ସବୁ ସ୍ରାବ ଓ ଗ୍ରନ୍ଥିର ପ୍ରୟୋଜନ ସେ ସବୁର ଉତ୍ସ୍ଥାପନ ଏହି ସମୟରେ ହୁଏ ।

ଡିମ୍ବାଣୁ ପାଇଁ ଉଥର ନାଳୀ ଦୁଇଟିର ତଳଭାଗର ମିଳନରେ ଜରାୟୁର ସଂଗଠନ ହୁଏ ଓ ଅନ୍ୟାନ୍ୟ ବୃଦ୍ଧି ପ୍ରକ୍ରିୟାଦ୍ୱାରା ସବୁଟିଁ ତଳଭାଗ ସ୍ତ୍ରୀଯୋନିରେ ପରିଣତ ହୁଏ । ଶୁକ୍ରାଣୁ ପାଇଁ ଉଥର ନାଳୀଦୁଇଟି କିନ୍ତୁ ଅଲଗା ଅଲଗା ଜାଗାରେ ମୂତ୍ରନାଳୀରେ ମିଳନ୍ତି

ହୁଅନ୍ତି ଓ ତା' ପୂର୍ବରୁ ଶୁକ୍ରାଣୁ ନାଳୀର ଶେଷଭାଗର ଠିକ ଉପରରୁ ଶୁକ୍ରାଶୟ ଓ ତତ୍‌ସଂଲଗ୍ନ ଗ୍ରନ୍ଥିଗୁଡ଼ିକ ଗଠିତ ହୁଏ । ଉଦରର ମଝି ଓ ପଛ ଭାଗରେ ଲିଙ୍ଗ-କୋଷଗୁଡ଼ିକ ପ୍ରଥମେ ଗ୍ରନ୍ଥି-ସୃଷ୍ଟି ହୁଅନ୍ତି । ତା' ପରେ ଭ୍ରୂଣର କ୍ରମବୃଦ୍ଧି ସଙ୍ଗେ ସଙ୍ଗେ ଲିଙ୍ଗ ଗ୍ରନ୍ଥି ଗୁଡ଼ିକ ଉଦରର ତଳଭାଗକୁ ଗତି କରେ । ଜନ୍ମସମୟରୁ ସ୍ତ୍ରୀ



୧୨ ନମ୍ବର ଚିତ୍ର

ଶିଶୁର ଲିଙ୍ଗଗ୍ରନ୍ଥି ଉଦରର ତଳଭାଗରେ ଓ ପୁରୁଷ ଶିଶୁର ଲିଙ୍ଗଗ୍ରନ୍ଥି ଅଣ୍ଡକୋଷରେ ଅବସ୍ଥାପିତ ହୋଇ ଥାଆନ୍ତି । ୧୦, ୧୧, ୧୨ ନମ୍ବର ଚିତ୍ରଗୁଡ଼ିକ ଅନୁସରଣ କଲେ ଲିଙ୍ଗ ଗ୍ରନ୍ଥିଗୁଡ଼ିକ କେବେ କେଉଁଠି ଥାଆନ୍ତି ସେ କଥା ବୁଝିହେବ ।

ଯୌବନର ପ୍ରାରମ୍ଭ ପର୍ଯ୍ୟନ୍ତ ଲିଙ୍ଗଗ୍ରନ୍ଥିଗୁଡ଼ିକର ବିଶେଷ କିଛି ପରିବର୍ତ୍ତନ ହୁଏ ନାହିଁ । ଯୌବନର ଅବ୍ୟବହିତ ପୂର୍ବରୁ ଲିଙ୍ଗଗ୍ରନ୍ଥିଗୁଡ଼ିକର ପୁଣି କ୍ରମବର୍ଦ୍ଧନ ଅବସ୍ଥା ଆସେ । ପ୍ରାପ୍ତ-ବୟସ୍କତାର ପ୍ରାରମ୍ଭରେ ଶରୀରକୋଷଗୁଡ଼ିକ କ୍ରମବୃଦ୍ଧିର ସମତା

ଓ ପୂର୍ଣ୍ଣତା ପାଇଥାଅନ୍ତି; କିନ୍ତୁ ଲିଙ୍ଗକୋଷଗୁଡ଼ିକ କ୍ରମେ କ୍ରମେ ପୂର୍ଣ୍ଣତା ପାଇ ବେଶୀ ବେଶୀ କର୍ମଠ ହୁଅନ୍ତି । ପ୍ରଜନନ କ୍ଷମତା ସ୍ତ୍ରୀମାନଙ୍କର ୩୦।୩୫ ବର୍ଷକାଳ ଓ ପୁରୁଷମାନଙ୍କର ମୃତ୍ୟୁପର୍ଯ୍ୟନ୍ତ


୯ ନମ୍ବର ଚିତ୍ର

ରହେ । ଏହି ସମୟ ମଧ୍ୟରେ ପୁରୁଷମାନଙ୍କ ଶରୀରରୁ ଶୁକ୍ରାଣୁ ଓ ସ୍ତ୍ରୀମାନଙ୍କ ଶରୀରରୁ ଡିମ୍ବାଣୁର ସ୍ଖଳନ ହୁଏ । ଉପଯୁକ୍ତ ଓ ଅନୁଷଙ୍ଗିକ ଅବସ୍ଥାରେ ସ୍ତ୍ରୀ ଓ ପୁରୁଷ ସଙ୍ଗମରେ ଶୁକ୍ରାଣୁ ଡିମ୍ବାଣୁରେ ପ୍ରବେଶ କରିବାର ସୁବିଧା ପାଏ ( ୯ ନମ୍ବର ଚିତ୍ର )। ଏହି ପ୍ରଣାଳୀରେ ନିଷିକ୍ତ ଡିମ୍ବାଣୁର ଉତ୍ପତ୍ତି ହୁଏ ଓ ନିଷିକ୍ତ ଡିମ୍ବାଣୁ କ୍ରମ ବର୍ଦ୍ଧିତ ହୋଇ ଭ୍ରୂଣରେ ପରିଣତ ହୁଏ ।

× × × ×

ଜନ୍ମ-ନିୟନ୍ତ୍ରଣ ପ୍ରଣାଳୀଗୁଡ଼ିକର ମୌଳିକ ଭାବନା, ଶୁକ୍ରାଣୁକୁ ଡିମ୍ବାଣୁରେ ପ୍ରବେଶର ସୁବିଧା ନ ଦେବା । ଏଥିପାଇଁ ସ୍ତ୍ରୀ ଓ ପୁରୁଷ ସଂଗମରେ କିପରି ଓ କେଉଁଠାରେ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନ ହୁଏ ଓ କେଉଁଠି, କି ଭାବରେ କ'ଣ କଲେ ଶୁକ୍ରାଣୁ, ଡିମ୍ବାଣୁ ଭିତରକୁ ପ୍ରବେଶ ନ କରିପାରିବ, ଏ ବିଷୟର ଚର୍ଚ୍ଚା ଜନ୍ମନିୟନ୍ତ୍ରଣ ପ୍ରକ୍ରିୟା ଓ ତା'ର ବ୍ୟବହାରରେ ପ୍ରଥମେ ବିଚାର କରିବାକୁ ହୁଏ ।

ଶୁକ୍ରାଣୁ ଓ ଡିମ୍ବାଣୁର ପୂର୍ଣ୍ଣାଙ୍ଗ ଅବସ୍ଥା ପ୍ରାପ୍ତି ଓ ସ୍ଖଳନଠାରୁ ନିଷିକ୍ତ ଡିମ୍ବାଣୁର ଉତ୍ପତ୍ତି ହେଲା ପର୍ଯ୍ୟନ୍ତ ସାଧାରଣ ଦୃଷ୍ଟି-ବହିର୍ଭୂତ କେତେଗୁଡ଼ିଏ ଅବଶ୍ୟମ୍ଭାବୀ ଘଟଣା ଉପରେ ଜନ୍ମ-ନିୟନ୍ତ୍ରଣର ଉପକରଣଗୁଡ଼ିକର ବ୍ୟବହାର ନିର୍ଭର କରିଥାଏ । ( ୪ ଓ ୫ ନମ୍ବର ଚିତ୍ର ) । କି ପ୍ରକାର ଯୌନସଂଗମ ଅଭ୍ୟାସରେ ଦୋଷହୀନ ଭାବରେ ଶୁକ୍ରାଣୁ ଓ ଡିମ୍ବାଣୁର ମିଳନର ସମ୍ଭାବନା ଏକାବେଳକେ କମିଯାଏ, ତା' ଉପରେ ଜନ୍ମନିୟନ୍ତ୍ରଣର ପ୍ରଣାଳୀଗୁଡ଼ିକର ପ୍ରୟୋଗ ହୋଇଥାଏ ।

ସ୍ତ୍ରୀ ଓ ପୁରୁଷର ସଂସର୍ଗରେ ସ୍ତ୍ରୀଯୋନିରେ ପୁରୁଷର ବୀର୍ଯ୍ୟ ସ୍ଖଳିତ ହୁଏ । ଥରକର ସଂସର୍ଗରେ ସାଧାରଣତଃ ୫୦।୧୫୦ ବିନ୍ଦୁ ବୀର୍ଯ୍ୟ ପତିତ ହୁଏ ଓ ସେଥିରେ ପ୍ରାୟ ୧୫।୨୦ କୋଟି ଶୁକ୍ରାଣୁ ଥାଆନ୍ତି । ଗୃହଦ୍ୱାରୁ ଦେଇ ଦିନଭିତରେ କୋଟି କୋଟି ଶୁକ୍ରାଣୁ ଶୁକ୍ରକୋଷରେ ତିଆରି ହେବା ସମ୍ଭବ । ଡିମ୍ବ-କୋଷର ଭାବ କିନ୍ତୁ ଅଲଗା । ଜନ୍ମ ହେଲାବେଳେ ପ୍ରତ୍ୟେକ ଡିମ୍ବକୋଷରେ ୧୫।୨୦ ହଜାର ଅପ୍ରାପ୍ତ ଡିମ୍ବାଣୁ ଥାଆନ୍ତି । ଯୌବନ ଆରମ୍ଭରେ ସ୍ତ୍ରୀମାନଙ୍କର ଋତୁ ଆରମ୍ଭ ହୁଏ । ଋତୁର ଅବ୍ୟବହିତ ପରେ ( ଋତୁ ସମୟଠାରୁ ଆରମ୍ଭ କରି ୧୨।୨୧ ଦିନ ) ମାସକୁ ମାସ ୧।୨ ଠାରୁ ୪।୫ ମାସ ପର୍ଯ୍ୟନ୍ତ

ଅପ୍ରାପ୍ତ ଡିମ୍ବାଣୁ ପୂର୍ଣ୍ଣତା-ପ୍ରାପ୍ତ ହୁଅନ୍ତି ଓ ଲିଙ୍ଗ ଗ୍ରନ୍ଥିରୁ ବାହାରି ଜରାୟୁ ସଂଲଗ୍ନ ନାଳୀ ଭିତରକୁ ଆସନ୍ତି ( ୫ ନମ୍ବର ଚିତ୍ର ) । ଏହି ସମୟ ବେଳକୁ ସ୍ତ୍ରୀ-ପୁରୁଷ ସଂସର୍ଗ ହୋଇ ଯୋନିରେ ବୀର୍ଯ୍ୟ ଥିଲେ ବୀର୍ଯ୍ୟରୁ ଶୁକ୍ରାଣୁ ଗୁଡ଼ିକରୁ ଅନେକ ଜରାୟୁର ଗ୍ରୀବା ଭିତ ଦେଇ ଜରାୟୁବାଟେ ତତ୍‌ସଂଲଗ୍ନ ନଳୀରେ ପ୍ରବେଶ କରନ୍ତି । ନାଳୀର ବହିଃ ଭାଗରେ ସାଧାରଣତଃ ନିଷିକ୍ତ ଡିମ୍ବାଣୁର ଉତ୍ପତ୍ତି ହୁଏ । ଗୋଟିଏ ଶୁକ୍ରାଣୁ ଗୋଟିଏ ଡିମ୍ବାଣୁ ଭିତରକୁ ପ୍ରବେଶ କଲେ ( ୯ ନମ୍ବର ଚିତ୍ର ) ତା' ଭିତରକୁ ଆଉ ଗୋଟିଏ ଶୁକ୍ରାଣୁର ପ୍ରବେଶ କଷ୍ଟକର । ଶୁକ୍ରାଣୁ ଲିଙ୍ଗଗ୍ରନ୍ଥିରୁ ବାହାରି ତତ୍‌ସଂଲଗ୍ନ ନାଳୀ ବାଟେ ଗଲା ବେଳେ ( ୪ ନମ୍ବର ଚିତ୍ର ) ଷିପ୍ରଗତିଯୁକ୍ତ ନ ଥାଏ । ଶୁକ୍ରାଶୟରେ ପହୁଞ୍ଚି ଷିପ୍ରଗତିଯୁକ୍ତ ହୁଏ । ସ୍ତ୍ରୀ ଯୋନିରେ ପଡ଼ିଲା ପରେ ଶୁକ୍ରାଣୁର ଷିପ୍ରଗତି ୨।୪ ଦିନ ଓ ନିଷେକ ଶକ୍ତି ୧।୨ ଦିନ ପର୍ଯ୍ୟନ୍ତ ଥାଏ । ଶୁକ୍ରାଣୁ ମିନିଟରେ ୩।୪ ଛଦ ପରିମିତ ଲମ୍ବ ଗତି କରେ ( 1.5 to 3 Milli meter ) ଅତଏବ ଯୋନିର ଉପର ଭାଗରୁ ଜରାୟୁ ସଂଲଗ୍ନ ନାଳୀର ବହିଃଭାଗକୁ ପହୁଞ୍ଚିବାକୁ ଶୁକ୍ରାଣୁକୁ ୨।୪ ଘଣ୍ଟା ସମୟ ଲାଗେ; କିନ୍ତୁ ତାର ବକ୍ରଗତି ଓ ଅନ୍ୟାନ୍ୟ ଅସୁବିଧା ଦେଖିଲେ ଶୁକ୍ରାଣୁକୁ ତା'ର କଳ୍ପିତ ସ୍ଥାନରେ ପହୁଞ୍ଚିବାକୁ ଆହୁରି ଅଧିକ ସମୟ ଲାଗିବା ମଧ୍ୟ ସମ୍ଭବ ହୋଇପାରେ ।

ଜନ୍ମନିୟନ୍ତ୍ରଣ ପ୍ରଣାଳୀଗୁଡ଼ିକରୁ ସୁଫଳ ପାଇବାକୁ ହେଲେ ଗର୍ଭାଧାନ ପୂର୍ବରୁ ଯେତେ ଗୁଡ଼ିଏ ପ୍ରାକୃତିକ ପ୍ରକ୍ରିୟାରେ ଗର୍ଭ ସଞ୍ଚାର ହୁଏ ସେ ଗୁଡ଼ିକର ବିଶେଷ ଜ୍ଞାନ ନ ଥିଲେ ଜନ୍ମନିୟନ୍ତ୍ରଣ ଉପକରଣ କାର୍ଯ୍ୟକାରୀ ହେବା ସବୁବେଳେ ସମ୍ଭବ ନୁହେ । ଏ ବିଷୟରେ ଆହୁରି ଅନେକ ବିଷୟ ଆଲୋଚନା କରାଯାଇ ପାରେ ।

# ଜନ୍ମ-ନିୟନ୍ତ୍ରଣ ପ୍ରଣାଳୀ

ଡକ୍ଟର ମହେନ୍ଦ୍ରଚନ୍ଦ୍ର ମିଶ୍ର

ପ୍ରତ୍ୟେକ ଜୀବ ତାର କ୍ରମବିକାଶ ଓ ବୃଦ୍ଧି ଚାହେଁ । ଏହା ଜୀବ ବିଜ୍ଞାନର ନିୟମ । ଜୀବର ସେହି କ୍ରମବିକାଶ ଓ ବଂଶବୃଦ୍ଧି ମୂଳରେ ଯୌନମିଳନର ଦୁଚ୍ଛନ୍ନବାସନା ରହି କାର୍ଯ୍ୟ କରୁଅଛି । କିନ୍ତୁ ଯୌନସମ୍ବନ୍ଧୀୟ କୌଣସି ପ୍ରକାର ଶିକ୍ଷା ଏ ପର୍ଯ୍ୟନ୍ତ ସମାଜରେ କିମ୍ବା ଶିକ୍ଷାପ୍ରଣାଳୀରେ ସ୍ଥାନ ପାଇ ନାହିଁ । କାରଣ ଯୌନସମ୍ବନ୍ଧୀୟ କୌଣସି ବିଷୟ ଚର୍ଚ୍ଚା କରିବା ଶିଷ୍ଟତା ଓ ସାମାଜିକତାର ରୁଚିବିରୁଦ୍ଧ ବୋଲି ବିବେଚିତ ହୋଇ ଆସିଅଛି । ଏ ବିଷୟରେ ବୈଜ୍ଞାନିକ ମୌଳିକ ତଥ୍ୟସବୁ ସ୍ୱାସ୍ଥ୍ୟ ଏବଂ ପ୍ରଜନନବିଜ୍ଞାନ ଦୃଷ୍ଟିରୁ ଜାଣିବା ଯେ ନିତାନ୍ତ ଅବଶ୍ୟକ, ତାହା ଆଧୁନିକ ଯୁଗର ସମାଜ ଉପଲବ୍ଧି କରୁଅଛି । ତେଣୁ ଆଧୁନିକ ଯୁଗରେ ଯୌନସମ୍ବନ୍ଧୀୟ ଚର୍ଚ୍ଚା ଉପରେ ସାଧାରଣ ଲୋକମାନଙ୍କର ନାନାପ୍ରକାର ଭୁଲ ଧାରଣା ଦୂର କରିବ ଏବଂ ସ୍ୱାସ୍ଥ୍ୟକର ନିୟମମାନ ଦର୍ଶାଇ ଦେବ ସେଥିପାଇଁ ଚେଷ୍ଟା ଚାଲିଛି । ଜନ୍ମନିୟନ୍ତ୍ରଣ ଏହି ଯୌନବିଜ୍ଞାନର ଗୋଟିଏ ଅଙ୍ଗ । ଏହି ଜନ୍ମ ନିୟନ୍ତ୍ରଣ ବିଷୟ ଯେ ବିଶେଷ ଭାବରେ ସମାଜରେ ପ୍ରଚଳିତ ହେବା ଦରକାର ଏ ବିଷୟ ନେଇ ମିଃ ଜଷ୍ଟିସ ମାକାର୍ଡ଼ି ମତ ଦେଇଅଛନ୍ତି ଯେ "ଜନ୍ମନିୟନ୍ତ୍ରଣର ଜ୍ଞାନ ବିଶେଷଭାବରେ ପ୍ରଚାରିତ ହେବା ଉଚିତ ।"

ପ୍ରତ୍ୟେକ ଜାତିର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଇତିହାସରେ ଜନ୍ମ-ନିୟନ୍ତ୍ରଣ ପାଇଁ ଚେଷ୍ଟା ଏବଂ ନାନାପ୍ରକାର ଜନ୍ମନିୟନ୍ତ୍ରଣ ପ୍ରଥାର ବ୍ୟବହାର ଦେଖିବାକୁ ମିଳେ । କିନ୍ତୁ ସେ ଗୁଡ଼ିକ ବିଜ୍ଞାନାନୁମୋଦିତ

ବ୍ୟୋର ନ ଥିବାରୁ ତାର ଅନିଷ୍ଟକର ଫଳ ଦେଖାଯାଇଅଛି । ଏହି ପ୍ରାଚୀନ ପ୍ରଥା ପ୍ରଧାନତଃ ଗର୍ଭନଷ୍ଟ ବା ଭ୍ରୂଣନଷ୍ଟ କରିବାର ନାନାପ୍ରକାର ଲୌକିକ ଅନିଷ୍ଟକର ପ୍ରଣାଳୀ ଉପରେ ନିର୍ଭର କରିଥିଲା । ଏ ପର୍ଯ୍ୟନ୍ତ ଏପରି ପ୍ରଥାର କୌଣସି କୌଣସି ସ୍ଥାନରେ ମଧ୍ୟ ପ୍ରଚଳନ ଅଛି ।

ଜନ୍ମନିୟନ୍ତ୍ରଣ ନେଇ ଯେ ସମସ୍ତ ବିଷୟମାନ ଏ ପ୍ରବନ୍ଧରେ ସ୍ଥାନ ପାଇବ, ତାହା କେବଳ ବିବାହିତ ପୁରୁଷ ଓ ସ୍ତ୍ରୀମାନଙ୍କ ଉଦ୍ଦେଶ୍ୟରେ ଲକ୍ଷିତ ଓ ପ୍ରଯୁଜ୍ୟ । ଜନ୍ମନିୟନ୍ତ୍ରଣ ଉଦ୍ଦେଶ୍ୟ ହେଉଛି କିପରି ଶିଶୁ ଓ ମା ସୁସ୍ଥ ଓ ସବଳ ରହିବେ, ତଦ୍ଦ୍ୱାରା ଜାତୀୟ ସ୍ୱାସ୍ଥ୍ୟର କିପରି ବୃଦ୍ଧି ହେବ, ଏବଂ ଲୋକବୃଦ୍ଧିକୁ ସୁନିୟନ୍ତ୍ରଣ କରିବାଦ୍ୱାରା ଆଧୁନିକ ଅର୍ଥିକ ଦୁଃଖ ଓ ସଙ୍ଘର୍ଷରୁ ଅର୍ଥକ୍ଲିଷ୍ଟ ଲୋକଙ୍କୁ ରକ୍ଷା କରିବ । ଏହା ଛଡ଼ା ଅନେକ ରୋଗ ଅଛି, ଯାହା କି ପୌରୁଷୀ ( Hereditary ) ଧରି ହୁଏ, ତେଣୁ ଜନ୍ମନିୟନ୍ତ୍ରଣ ଦ୍ୱାରା ସେ ପ୍ରକାର ରୋଗର ପ୍ରସାରକୁ ମୂଳରୁ ଅବରୋଧ କରିବାଦ୍ୱାରା ଜାତୀୟ ସ୍ୱାସ୍ଥ୍ୟକୁ ଅନାବିଳ ରଖି ପାରିବ ।

ଜୀବବିଜ୍ଞାନ ଦୃଷ୍ଟିରୁ ଦେଖିଲେ ଯୌନମିଳନର ଅଭ୍ୟନ୍ତରୀଣ ଉଦ୍ଦେଶ୍ୟ ହେଉଛି ସନ୍ତାନ ପ୍ରଜନନ । ଏହି ପ୍ରଜନନ ଶକ୍ତି ପ୍ରତ୍ୟେକ ପ୍ରାପ୍ତବୟସ୍କ ସ୍ତ୍ରୀର ଅଛି । କିନ୍ତୁ ସେହି ପ୍ରଚ୍ଛନ୍ନ ଶକ୍ତିକୁ ଅବାଧ ପ୍ରଶ୍ରୟ ଦେଲେ, ପୁନଃ ପୁନଃ ଗର୍ଭଧାରଣ ଦ୍ୱାରା ମା'ର ସ୍ୱାସ୍ଥ୍ୟ କ୍ରମଶଃ ଖରାପ ହୁଏ ଏବଂ ଶିଶୁର ଉପଯୁକ୍ତ ଯତ୍ନ ନେଇ ହୁଏ ନାହିଁ; କାରଣ ଗର୍ଭାଧାନ ପରେ ମା ତାର ସ୍ୱାଭାବିକ ସ୍ୱାସ୍ଥ୍ୟକୁ ଫେରି ଆସିବାକୁ କିଛି ସମୟ ଲାଗେ । ମା ତା'ର ସ୍ୱାସ୍ଥ୍ୟ ଫେରି ପାଇବା ପୂର୍ବରୁ ଗର୍ଭାଧାନ ହେଲେ, ମା ଶିଶୁର ଉପଯୁକ୍ତ ପାଳନରେ ଅକ୍ଷମ ହୁଏ । ତେଣୁ ପ୍ରତ୍ୟେକ ଗର୍ଭାଧାନ ମଧ୍ୟରେ ଅନ୍ତତଃ ଉପଯୁକ୍ତ

ସମସ୍ତ ବ୍ୟବଧାନ ରହିବା ମା'ର ଓ ଶିଶୁର ସ୍ୱାସ୍ଥ୍ୟ ଦିଗରୁ ଏବଂ ବୈବାହିକ ଜୀବନର ସ୍ୱାଚ୍ଛନ୍ଦ୍ୟ ଦୃଷ୍ଟିରୁ ନିତାନ୍ତ ଆବଶ୍ୟକ ।

ଯେଉଁ ପୁରୁଷ ଓ ସ୍ତ୍ରୀମାନଙ୍କ ହାତରେ ଏହି ଜନ୍ମନିୟନ୍ତ୍ରଣ ପ୍ରଥା ଓ ଉପକରଣମାନଙ୍କ ବିଷୟ ଦିଆ ଯାଉଛି, ସେମାନେ ଏହାକୁ ବୁଦ୍ଧିମତା ଓ ସତର୍କତା ସହିତ ବ୍ୟବହାର କରିବା ଉଚିତ । କାରଣ ଏହାର ଉଦ୍ଦେଶ୍ୟ ନୁହେଁ ଯେ ଏକାବେଳକେ ଜନ୍ମ-ନିରୋଧ କିମ୍ବା ଅବାଧ ଯୌନମିଳନ । ବିଜ୍ଞାନର ପରିସର ଯେପରି ଦିନକୁ ଦିନ ବୃଦ୍ଧି ପାଉଅଛି, ଲୋକମାନେ ଏହାର ପ୍ରୟୋଜନୀୟତା ଏବଂ ଅପବ୍ୟବହାରରେ ଅନିଷ୍ଟତା ଉପଲବ୍ଧି କରି ପାରିବେ । ଯେଉଁମାନେ ଏକାବେଳକେ ଜନ୍ମନିରୋଧ ଗ୍ରହାନ୍ତି, ସେମାନେ ପ୍ରଥମେ ଜନ୍ମନିରୋଧକୁ ପ୍ରଶ୍ରୟ ଦେଇ ପରବର୍ତ୍ତୀ କାଳରେ ନିଜକୁ ହତାଶ ଓ ନିଃସ୍ୱ ବୋଧ କରି ଥାଆନ୍ତି । ସିଲ-ମାତରଙ୍କ କଥାରେ ଶିଶୁ ହେଉଛି ଦାମ୍ପତ୍ୟ ଜୀବନର ଜୀବନ୍ତ ପ୍ରତୀକ ଏବଂ ଯେବେ ବୈବାହିକ ଜୀବନର ଐକ୍ୟର ଏହି ଜୀବନ୍ତ ପ୍ରତୀକ ନ ଥାନ୍ତା ତେବେ ଅନେକ ବିବାହ ବିଷମୟ ହୋଇ ଉଠନ୍ତା ।

ଜନ୍ମ ନିୟନ୍ତ୍ରଣ ପ୍ରଣାଳୀ ଓ ଉପକରଣମାନ ସ୍ୱୀକାର କରିବା ପୂର୍ବରୁ ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷ ନିଜ ସମ୍ବନ୍ଧରେ କେତେକ ମୌଳିକ କଥା ଜାଣି ରଖିବା ଦରକାର । ମନୁଷ୍ୟର ପ୍ରଜନନ ଶକ୍ତି ପ୍ରାୟ ୧୮ ବର୍ଷଠାରୁ ୬୦ ବର୍ଷ ପର୍ଯ୍ୟନ୍ତ ଥାଏ ଏବଂ ସ୍ତ୍ରୀ-ମାନଙ୍କର ପ୍ରାୟ ୧୨ ବର୍ଷଠାରୁ ୪୫ ବର୍ଷ ପର୍ଯ୍ୟନ୍ତ ଥାଏ । ଏହି ବୟସ ମଧ୍ୟରେ ଅନେକ ତାରତମ୍ୟ ଓ ବୈଷମ୍ୟ ଦେଖାଯାଏ । ଏହି ପ୍ରଜନନକ୍ଷମ ବୟସରେ ପ୍ରତ୍ୟେକ ପୁରୁଷର ମୁଷ୍କରେ ଶୁକ୍ରକୀଟାଣୁ ତିଆରି ହୁଏ ଏବଂ ସ୍ତ୍ରୀର ଡିମ୍ବାଶୟରେ ଡିମ୍ବାଣୁ ତିଆରି

ହୁଏ । କିନ୍ତୁ ପୁରୁଷର ମୁକ୍ତ ଅସଂଖ୍ୟ ଶୁକ୍ର କୀଟାଣୁ ଉତ୍ପନ୍ନ କଲ ହେଲେ, ସ୍ତ୍ରୀର ଡିମ୍ବାଶୟ ଗୋଟିଏ ମାତ୍ର ଡିମ୍ବାଣୁ ପ୍ରତ୍ୟେକ ମାସରେ ଉତ୍ପନ୍ନ କରେ । ସ୍ତ୍ରୀ ଯୌବନାବସ୍ଥା ପ୍ରାପ୍ତ ହେଲେ, ପ୍ରତ୍ୟେକ ମାସରେ ଋତୁ ହୁଏ । ଯୌବନାବସ୍ଥା ପ୍ରାପ୍ତପର ପ୍ରତ୍ୟେକ ମାସରେ ଗୋଟିଏ କରି ଡିମ୍ବାଣୁ 'ବାହାରେ; ତେଣୁ ପ୍ରତ୍ୟେକ ସ୍ତ୍ରୀ ୧୬ ବର୍ଷଠାରୁ ଯୌନମିଳନ ପରେ ଯଦି ତାର ଡିମ୍ବାଣୁ ଉପଯୁକ୍ତ ଶୁକ୍ର କୀଟାଣୁ ସଙ୍ଗେ ମିଶିବାର ସୁଯୋଗ ଓ ସୁବିଧା ପାଏ, ତାର ଗର୍ଭବତୀ ହେବାର ସମ୍ଭାବନା ଥାଏ । ଯଦି ଏହା ଶୁକ୍ର କୀଟାଣୁ ସଙ୍ଗେ ମିଶି ନ ପାରେ ତାହାହେଲେ ଏହା ନଷ୍ଟ ହୋଇ ଫାଲେପିଅନ ନଳୀ (ଡିମ୍ବାଣୁବାହି ନଳୀ) ଦ୍ୱାରା ଜରାୟୁ ଦେଇ, ଯୌନରନ୍ଧ୍ର ବାଟେ ବାହାରକୁ ବାହାରିଯାଏ । କୌଣସି ସ୍ତ୍ରୀ ଏହି ଡିମ୍ବାଣୁ କେବେ ଡିମ୍ବକୋଷରୁ ବାହାରି ଆସି ଜରାୟୁ ଅଞ୍ଚଳକୁ ଆସେ ତାହା ଜାଣି ପାରେ ନାହିଁ—ତେଣୁ ମାସରେ କେବେ ଓ କେଉଁ ସମୟରେ ଶୁକ୍ରକୀଟାଣୁ ସଙ୍ଗେ ମିଶିଲେ ନିଷିକ୍ତ ହୋଇ ପାରିବ ତାହା ସଠିକ ଜାଣି ପାରିବାର ଉପାୟ ନାହିଁ । ଯଦି ଏହା ଜାଣି ପାରିବାର କୌଣସି ସଠିକ ଉପାୟ ଥାଆନ୍ତା, ତାହାହେଲେ ଜନ୍ମ-ନିୟନ୍ତ୍ରଣ ବଡ଼ ସହଜ ହୋଇ ଥାଆନ୍ତା ।

ଯୌନମିଳନ ସମୟରେ ପୁରୁଷର ସାଧାରଣତଃ ଶୁକ୍ରସ୍ଖଳନ ସ୍ତ୍ରୀ ଯୋନିରେ କିମ୍ବା ସମୟ ସମୟରେ ଜରାୟୁର ମୁଖରେ ମଧ୍ୟ ହୋଇଥାଏ । ଏହି ଶୁକ୍ରରେ ପ୍ରାୟ ୧ ଲକ୍ଷରୁ ୫୦୦ ଲକ୍ଷ ପର୍ଯ୍ୟନ୍ତ ଶୁକ୍ରକୀଟାଣୁ 'ଥାଆନ୍ତି । ଏଥି ମଧ୍ୟରୁ ଗୋଟିଏ ମାତ୍ର ଡିମ୍ବାଣୁ ସଙ୍ଗେ ନିଷିକ୍ତ ହେଲେ ଗର୍ଭାଧାନ ହୁଏ ।

ପ୍ରତ୍ୟେକ ଯୌନମିଳନ ପରେ ଯେ ଗର୍ଭାଧାନ ହୁଏ ନାହିଁ, ତାର ଅନେକ ପାରିପାର୍ଶ୍ୱିକ କାରଣ ଅଛି । ପ୍ରଥମତଃ ଯୌନମିଳନ ସମୟରେ ଡିମ୍ବାଣୁ ଜରାୟୁରେ ନ ଥାଇପାରେ, ଦ୍ୱିତୀୟରେ ଶୁକ୍ରକୀଟାଣୁ ଜରାୟୁମୁଖଦ୍ୱାରର (Cervical canal) ଭେଦକରି ଜରାୟୁକୁ ଯିବାରେ ଅକ୍ଷମତା, ସ୍ତ୍ରୀ ଯୋନିର ଅଭ୍ୟନ୍ତରିଣ ଅବସ୍ଥା ଶୁକ୍ରକୀଟାଣୁକୁ ଚଳତ୍‌ଶକ୍ତିରହିତ କରିଦେବା, କିମ୍ବା ଜରାୟୁର କୌଣସି ରୁଗ୍ଣ ଅବସ୍ଥା । ତେଣୁ କୌଣସି ସମୟରେ ଜନ୍ମନିରୋଧ ପ୍ରକ୍ରିୟାର ଆଶ୍ରୟ ନ ନେଇ, ଗର୍ଭାଧାନର ସମ୍ଭାବନା ନ ଥାଇପାରେ; କିନ୍ତୁ ସେହି ଭୁଲଧାରଣାରେ ପରବର୍ତ୍ତୀ କୌଣସି ସମୟରେ ଯୌନମିଳନ ଦ୍ୱାରା, ଗର୍ଭାଧାନ ହୋଇଯିବାର ସମ୍ଭାବନା ମଧ୍ୟ ସେତିକି ଥାଏ ।

ସ୍ତ୍ରୀ ଯୋନିର ରସର ରାସାୟନିକ ପ୍ରକ୍ରିୟାଦ୍ୱାରା ଶୁକ୍ରକୀଟାଣୁମାନେ ସାଧାରଣତଃ କେତେ ଘଣ୍ଟା ମଧ୍ୟରେ ନିଶ୍ଚଳ ଓ ନିସ୍ପନ୍ଦ ହୋଇପାଆନ୍ତି । ତେବେ ଏହି ସମୟର ବୈଷମ୍ୟ ମଧ୍ୟ ଦେଖା ପାଇଅଛି । ସ୍ତ୍ରୀ ଯୋନିର ୩।୪ ଦିନ ପର୍ଯ୍ୟନ୍ତ ଶୁକ୍ରକୀଟାଣୁ ନିଷେକ କରିବାର କ୍ଷମତା ଥିବାର ଦେଖା ଯାଇଅଛି । ତେଣୁ କୌଣସି ପ୍ରକାର ଉପାୟ ଦ୍ୱାରା ଯଦି ଶୁକ୍ରକୀଟାଣୁକୁ ବାଧା ନ ଦିଆଯାଏ, ତେବେ ଗର୍ଭାଧାନର ସମ୍ଭାବନା ରହିଥାଏ ।

ତେଣୁ ଜନ୍ମ ନିୟନ୍ତ୍ରଣର ପ୍ରକୃଷ୍ଟ ଉପାୟ ହେଉଛି ଡିମ୍ବାଣୁ ଓ ଶୁକ୍ରକୀଟାଣୁର ମିଳନରେ ବାଧା ଦେବା । ଏହା ଦୁଇଟି ଉପାୟରେ ହୋଇପାରେ; ଶୁକ୍ରକୀଟାଣୁ ଜରାୟୁମୁଖଦ୍ୱାରରେ ଯେପରି ପହଞ୍ଚି ନ ପାରେ, ତାକୁ ଅବରୋଧ କରିବା ଉପକରଣମାନଙ୍କ ଦ୍ୱାରା ହୋଇପାରେ କିମ୍ବା ଶୁକ୍ରକୀଟାଣୁକୁ କୌଣସି ରାସାୟନିକ ପ୍ରକ୍ରିୟା ଦ୍ୱାରା ସ୍ତ୍ରୀ ଯୋନିରେ ନଷ୍ଟ କରି ଦିଆଯାଇ ପାରେ ।

ଏହି ଜନ୍ମନିୟନ୍ତ୍ରଣ ପ୍ରଣାଳୀ କେତେକ ରସାୟନିକ, ଯାନ୍ତ୍ରିକ, ଏବଂ ଶାରୀରିକ ପ୍ରକ୍ରିୟା ଉପରେ ନ୍ୟସ୍ତ। ଏହି ପ୍ରଣାଳୀମାନଙ୍କ ମଧ୍ୟରୁ କେତେକ ପ୍ରଣାଳୀ ପୁରୁଷ ସ୍ୱାଧୀନ ଭାବେ ଅବଲମ୍ବନ କରିପାରେ କିମ୍ବା ସ୍ତ୍ରୀ ଅବଲମ୍ବନ କରିପାରେ, କିମ୍ବା ଉଭୟେ ଅବଲମ୍ବନ କରିପାରନ୍ତି। କିନ୍ତୁ ଏହି ପ୍ରଣାଳୀଗୁଡ଼ିକ ମଧ୍ୟରୁ କେଉଁଟି କାହାପାଇଁ ଉପଯୁକ୍ତଭାବେ କାର୍ଯ୍ୟକାରୀ ହେବ, ତା'ର ବ୍ୟବସ୍ଥା ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷ ଉପଯୁକ୍ତ ଡାକ୍ତରଙ୍କ ପ୍ରଣାଳୀର ପରାମର୍ଶ ନେଇ କରିବାକୁ ହେବ। ଏଠାରେ କେତେଗୁଡ଼ିଏ ଉଲ୍ଲେଖ କରାଯାଉଅଛି।

ପୁରୁଷମାନଙ୍କ ପାଇଁ ପ୍ରଯୁଜ୍ୟ ଜନ୍ମନିୟନ୍ତ୍ରଣ ପ୍ରଥା :—

(୧) ଅସମ୍ପୂର୍ଣ୍ଣ ଯୌନମିଳନ ( *Coitus Interruptus* )— ଏହି ପ୍ରକ୍ରିୟା ଦ୍ୱାରା ପୁରୁଷର ଜନନେନ୍ଦ୍ରିୟ ଶୁକ୍ରସ୍ଖଳନ ପୂର୍ବରୁ ସ୍ତ୍ରୀ ଯୋନିରୁ ବାହାର କରି ନିଆଯାଏ। ଏହି ଜନ୍ମନିୟନ୍ତ୍ରଣ ପ୍ରଥା ବଡ଼ ପୁରାତନ ଏବଂ ଲୋକପ୍ରିୟ, କାରଣ ଏଥିରେ କୌଣସି ରକମର ଶିକ୍ଷା କିମ୍ବା କୌଣସି ଉପକରଣର ଆବଶ୍ୟକତା ନାହିଁ। କିନ୍ତୁ ଡାକ୍ତରମାନଙ୍କ ମତରେ ଏହି ପ୍ରକ୍ରିୟା—ଉଭୟ ସ୍ତ୍ରୀ ଓ ପୁରୁଷ ପକ୍ଷରେ ଅନିଷ୍ଟକାରକ; କାରଣ ଯୌନମିଳନ ପ୍ରକ୍ରିୟା ଦ୍ୱାରା ସ୍ନାୟୁ ଉପରେ ବଡ଼ ଚାପ ପଡ଼େ। ତେଣୁ ସ୍ୱାଭାବିକ ସ୍ନାୟବିକ ଚାପର ଅବରୋଧ ହେତୁ ଶରୀରର ସ୍ନାୟୁମଣ୍ଡଳ ଉପରେ ବଡ଼ ଆଘାତ ଆସେ। ସ୍ତ୍ରୀର ଯୌନମିଳନର ଅସମ୍ପୂର୍ଣ୍ଣତା ହେତୁ ନାନାପ୍ରକାର ମାନସିକ ଅବସାଦ ଆସିଥାଏ। ଅଧିକନ୍ତୁ ମଧ୍ୟ ଏହା ଯେ ଜନ୍ମନିୟନ୍ତ୍ରଣ କରିବାରେ ପୂର୍ଣ୍ଣଭାବରେ ସଫଳ ହୁଏ, ତାହା ନୁହେଁ। କାରଣ ପୁରୁଷର ଶୁକ୍ରସ୍ଖଳନ ହେବା ପୂର୍ବରୁ ପୁରୁଷ ଯୋନି ବାହାର କରିବା ସମୟରେ କିଛି ଶୁକ୍ରାଂଶ ସ୍ଖଳନ ହେଲେ ଗର୍ଭାଧାନ

ହୋଇଥାଏ । କିନ୍ତୁ କୌଣସି ଉପଯୁକ୍ତ ଜନ୍ମନିୟନ୍ତ୍ରଣ ପ୍ରଣାଳୀର ଅଭାବରେ ଏହି ପ୍ରଣାଳୀଟିର ସ୍ଥାନ ଅଛି । (୨) କଣ୍ଡମ୍ (condom) ଏକପ୍ରକାର ରବର ନଳୀ—ଫ୍ରେଞ୍ଚଲେଟର (French letter) ଏହା ଗୋଟିଏ ଅତିପୁରାତନ ଜନ୍ମନିୟନ୍ତ୍ରଣ ଉପକରଣ । ୧୭୭୨ ସାଲରେ ଏହା ଲଣ୍ଡନରେ ବିକ୍ରି ହେଉଥିବାର ଉଲ୍ଲେଖ ଅଛି । ଜନ୍ମନିୟନ୍ତ୍ରଣ ଉପକରଣମାନଙ୍କ ମଧ୍ୟରୁ ପୁରୁଷମାନଙ୍କ ପାଇଁ ଏହା ଗୋଟିଏ ଅତ୍ୟନ୍ତ ଲୋକପ୍ରିୟ ଉପକରଣ । ଜନ୍ମନିୟନ୍ତ୍ରଣ ବ୍ୟତୀତ ଏହା ଉପଦଂଶ ( Syphilis ) ରୋଗରୁ ପ୍ରତିଷେଧକ ସ୍ୱରୂପ ବ୍ୟବହାର କରାଯାଉଥିଲା । ବୃକ୍, କସ୍, ହାଭ୍‌ଲେକ, ଇଲିଶ୍ ଏବଂ ଲର୍ଡ଼ସେନ ପ୍ରଭୃତି ଏହି ଉପକରଣଟିର ବ୍ୟବହାରକୁ ଅନୁମୋଦନ କରିଅଛନ୍ତି । କିନ୍ତୁ ମେରି ଷ୍ଟୋପସ୍ (Dr. Morie Stopes) ଏଥିରେ ଶତକଡ଼ା ୭୫ ସଫଳ ହେବାର ଉଲ୍ଲେଖ କରିଅଛନ୍ତି । ଆମେରିକାନ୍ ବାର୍ଥ କଣ୍ଟ୍ରୋଲ ଲିଗ୍ (American birth control league) ଶତକଡ଼ା ୫୦ ନିଷ୍ଫଳ ହେବା ଦର୍ଶାଇ ଅଛନ୍ତି । କିନ୍ତୁ ଅନ୍ୟ ଦିଗରେ କେମ୍ବ୍ରିଜ୍ କ୍ଲିନିକ୍ (Cambridge clinic) ୩୧ ଟି ଲୋକଙ୍କ ମଧ୍ୟରୁ ୩ଟି କ୍ଷେତ୍ରରେ ସଫଳ ହୋଇଛି ବୋଲି ଦର୍ଶାଇଛନ୍ତି ଏବଂ ଉପଯୁକ୍ତ ଭାବରେ ବ୍ୟବହାର କରି ପାରିଲେ ଏହାକୁ ଗୋଟିଏ ନିର୍ଭରଯୋଗ୍ୟ ଉପକରଣ ବୋଲି, ଏହାର ବ୍ୟବହାରକୁ ଅନୁମୋଦନ କରିଅଛନ୍ତି । ବର୍ତ୍ତମାନ ବଜାରରେ ଏହା ଭଲ ଭାବରେ ତିଆରି ହେଲଣି । ନୂଆ 'ଲେଟର' ଗୁଡ଼ିକ ଲଟେକ୍ସ ରବରରେ ତିଆରି ହେଉଅଛି । ଏଗୁଡ଼ିକ ପତଳା ଏବଂ ତିଆରି ହୋଇ ବଜାରକୁ ବିକ୍ରି ଯୋଗ୍ୟ ବୋଲି ପଠାହେବା ପୂର୍ବରୁ ଉପଯୁକ୍ତ ଭାବରେ ପରୀକ୍ଷିତ ହୋଇଥାଏ ।

ଏ ଗୁଡ଼ିକ ଚମଡ଼ା କିମ୍ବା ରବରରେ ମଧ୍ୟ ତିଆରି ହୋଇପାରେ । ଚମଡ଼ାରେ ତିଆରି ହୋଇଥିବା 'ଲେଟର ସିଥ୍' ଶକ୍ତ ଏବଂ ପତଳା । ଏହାକୁ ବ୍ୟବହାର କରିବା ପୂର୍ବରୁ ପାଣିରେ ଓଦା କରିବାକୁ ହେବ । ଏହା ଜନନେନ୍ଦ୍ରିୟ ଉପରେ କୌଣସି ସ୍ପର୍ଶ ଦିଏ ନାହିଁ ।

ରବର କିମ୍ବା ଚମଡ଼ାର 'ଲେଟର' ବା ଖୋଳ ବ୍ୟବହାର କରିବା ନିଜର ରୁଚି ଉପରେ ନିର୍ଭର କରେ ।

ପ୍ରଥମେ ଏହି ରବର ଲେଟର ଉପରେ କିଛି ଜନ୍ମନିରୋଧ ନିମିତ୍ତ ରାସାୟନିକ ଜେଲି (ଲାକଟିକ୍ ଏସିଡ୍ ଜେଲି) ଲଗାଇବ ଏବଂ ସେହି ଜେଲିରୁ ପତଳା ଭାବରେ ପୁରୁଷର ଜନନେନ୍ଦ୍ରିୟ ଉପରେ ଲଗାଇବ । ତା ପରେ ଏହି ରବର ଖୋଳଟି ପୁରୁଷର ଜନନେନ୍ଦ୍ରିୟ ଉପରେ ଲଗାଇବ ଏବଂ ଯୌନମିଳନ ପରେ ଏହି ରବରଟି ଠିକ୍ ଅଛି କି ନାହିଁ ଦେଖିବା ଉଚିତ । ଯଦି କେଉଁଠାରେ ଫାଟି ଯାଇଥିବାର ସନ୍ଦେହ ହୁଏ ତେବେ ସ୍ତ୍ରୀ ଯୋନୀକୁ କୌଣସି ଜନ୍ମନିୟନ୍ତ୍ରଣ ନିମିତ୍ତ ରାସାୟନିକ ଲୋସନ ଦ୍ୱାରା ଭଲକରି ସଫା କରିବା ଦରକାର, ଯେପରି ଶୁକ୍ରକୀଟାଣୁଗୁଡ଼ିକ ନଷ୍ଟ ହୋଇଯିବ ।

ପ୍ରତ୍ୟେକ ଥର ଯୌନମିଳନ ସମୟରେ ଗୋଟିଏ ଲେଖାଁଏ ନୂଆ କଣ୍ଡୋମ୍ କିମ୍ବା ଖୋଳ ବ୍ୟବହାର କଲେ ଭଲ । ଅର୍ଥିକ ଦୃଷ୍ଟିରୁ ଏହା ସମ୍ଭବପର ନ ହେଲେ ତାକୁ ରଖିବା ନିମିତ୍ତ ବିଶେଷ ଯତ୍ନ ନେବା ଆବଶ୍ୟକ । ରବର ଜିନିଷଗୁଡ଼ିକ ବ୍ୟବହାର ପରେ ପାଣିରେ ଭଲଭାବରେ ଧୋଇବ, ଶୁଖାଇବ ଏବଂ ଟଲ୍କ ପାଉଡ଼ର ଦେଇ ତାକୁ ରଖିବ । ଏହାକୁ ଗୁଡ଼ାଇ କରି ରଖିବ ନାହିଁ । ଚମଡ଼ା ସିଥ୍ ବା ଖୋଳକୁ ଧୋଇ, ଶୁଖାଇ ଗ୍ରିଜ୍ ଦେଇ ରଖିବ ।

ଅନ୍ୟ ଏକପ୍ରକାର ଗ୍ଲେଟ ଫ୍ରେଞ୍ଚ ଲେଟର ବା ଖୋଳ ଯାହା କି କେବଳ ପୁରୁଷ ଜନନେନ୍ଦ୍ରିୟର ଅଗ୍ରଭାଗକୁ ଆବରଣ କରଦେବ । ତାକୁ ମାଲ୍‌ଥସ୍ କ୍ୟାପ୍ , ଆମେରିକାନ୍ ଟିପ୍ କମ୍ବା ଗ୍ଲେଟ ଫ୍ରେଞ୍ଚ ଲେଟର ବୋଲି କହନ୍ତି ( Malthes cap or American tip or short letter ) । ଏହାକୁ ମଧ୍ୟ ବଡ଼ ଲେଟର ପରିବର୍ତ୍ତରେ ବ୍ୟବହାର କରି ଯାଇପାରେ ।

କିନ୍ତୁ ଏହି ଖୋଳ ଉପରେ ପୁରି ନିର୍ଭର କରିବା ଉଚିତ ନୁହେଁ । ଏଥି ସଙ୍ଗେ କୌଣସି ପ୍ରକାର ଶୁକ୍ରକୀଟାଣୁ-ନାଶକ ଜେଲି ବ୍ୟବହାର କରିବା ଉଚିତ ।

## ସ୍ତ୍ରୀମାନଙ୍କ ପ୍ରତି ପ୍ରଯୁଜ୍ୟ ଜନ୍ମନିୟନ୍ତ୍ରଣ ପ୍ରଥା

୧ । **ନିରାପଦ ସମୟ** ( Safe priod ) :—ଏହି ସମୟ ଋତୁଠାରୁ ଆରମ୍ଭ କରି ଯେଉଁ ସମୟରେ ଡିମ୍ବାଣୁ ଜରାୟୁରେ ନ ଥାଇପାରେ ତାକୁ ଧରି ଯାଇଅଛି । ଏହା ବହୁଳଭାବେ ଗ୍ରେଟ୍‌ବ୍ରିଟେନ୍ ଓ ଆମେରିକାରେ ପ୍ରଚଳନ ଥିଲା । ଏହା ବହୁତ ଜନ୍ମନିୟନ୍ତ୍ରଣ ବିଷୟ ଲେଖା ବହି ଏବଂ ଯୌନସମ୍ବନ୍ଧୀୟ ବହିରେ ସ୍ଥାନ ପାଇଥିବାରୁ ଅତ୍ୟନ୍ତ ଲୋକପ୍ରିୟ ହୋଇଥିଲା । ମାସର ମଧ୍ୟରେ କେତୋଟି ଦିନ ଆତ୍ମସଂଯମ ଓ ବ୍ରହ୍ମଚର୍ଯ୍ୟ ଉପରେ ନିର୍ଭର କରୁଥିବାରୁ ଏହି ପ୍ରଣାଳୀଟି ଧର୍ମଯାଜକମାନଙ୍କ ଦ୍ୱାରା ଅନୁମୋଦିତ ହୋଇଥିଲା ।

ପ୍ରକୃତତଃ କହିବାକୁ ଗଲେ, ପ୍ରତ୍ୟେକ ସ୍ତ୍ରୀ କିଛି ସମୟ ପାଇଁ, ଯେଉଁ ସମୟରେ ଡିମ୍ବାଣୁ ଡିମ୍ବକୋଷରୁ ବାହାରି ଆସେ, ସେହି ସମୟରେ ଗର୍ଭବତୀ ହେବା ଅବସ୍ଥାରେ ଥାଏ । ତା'ପରେ ଯୌନମିଳନରେ ଗର୍ଭାଧାନ ହେବାର କମ ସମ୍ଭାବନା ଥାଏ । ଏହି ନିରାପଦ ସମୟ ନେଇ ଅଷ୍ଟ୍ରିୟାର ଜଣେ ଜୀବବିଜ୍ଞାନବିତ୍

(Dr. Harman Knaus) ଡାକ୍ତର ହରମାନ୍ ନସ୍ ଏବଂ ଜାପାନର ସ୍ତ୍ରୀରୋଗ ବିଶାରଦ (Dr. Khusaka Ogino) ଡାକ୍ତର ଅଗିନୋ ସ୍ୱତନ୍ତ୍ର ଭାବରେ ଗବେଷଣା କରି ଏହାର ସତ୍ୟତା ନିରୂପଣ କରିଥିଲେ । ଏହି ଦୁଇଜଣ ଡମ୍ବାଶୟରୁ ଡମ୍ବବହିଷ୍କରଣ(Ovulation) ଏବଂ ଋତୁ ମଧ୍ୟରେ ସମ୍ବନ୍ଧ ରହିଛି ବୋଲି ସାବ୍ୟସ୍ତ କରିଥିଲେ । ଏହାର ଉପରେ ନିରାପଦ ସମୟର ଭିତ୍ତି ଅଗିନୋଙ୍କ ହିସାବ ଅନୁସାରେ ଋତୁ ଆରମ୍ଭଠାରୁ ପଛକୁ ୧୨ ଦିନଠାରୁ ୧୬ ଦିନ ଗଣି ନେଲେ, ସେହି ସମୟକୁ ଡମ୍ବାଣୁ ଡମ୍ବାଶୟରୁ ବହିଷ୍କରଣ ସମୟ ବୋଲି (Ovulation) ଧରିବାକୁ ହେବ । ନସ୍ (Knaus) କହନ୍ତି ଏହି ଡମ୍ବାଣୁ ଡମ୍ବାଣୁବହିଷ୍କରଣ ସମୟ ଋତୁଠାରୁ ୧୫ ଦିନଠାରେ ହୁଏ । ଯେହେତୁ ଋତୁର ବ୍ୟବଧାନ ପ୍ରତ୍ୟେକ ସ୍ତ୍ରୀମାନଙ୍କର ତାରତମ୍ୟ ଦେଖାଯାଏ । ତେଣୁ ଏହାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ପ୍ରତ୍ୟେକ ସ୍ତ୍ରୀର ଋତୁର ବ୍ୟବଧାନ ଏବଂ ନିୟମିତତା ଜାଣିବା ନିତାନ୍ତ ଆବଶ୍ୟକ

ଅଧୁନିକ ବୈଜ୍ଞାନିକମାନେ କହନ୍ତି ଡମ୍ବାଣୁ ଦିନ, ସପ୍ତାହ ଧରି ଜରାୟୁରେ ରହେ ନାହିଁ । ଏହି ନିଷିକ୍ତ ହେବାପାଇଁ କେତେକ ଘଣ୍ଟା ଅତିବଡ଼ ହେଲେ ଦିନକରୁ ବେଶୀ ରହେ ନାହିଁ । ତେଣୁ ଏହି ଡମ୍ବାଣୁ ବହିଷ୍କରଣ ସମୟରେ କିମ୍ବା ତାହାର ଅବ୍ୟବହିତ ପୂର୍ବରୁ କିମ୍ବା ପରେ ଯୌନମିଳନ ହେଲେ ଗର୍ଭାଧାନ ହୋଇଥାଏ । (Knaus) ନସ୍ ଏହାକୁ ୫ ଦିନ ପର୍ଯ୍ୟନ୍ତ ଧରିଅଛନ୍ତି—ଡମ୍ବାଣୁ-ବହିଷ୍କରଣ ଦିନ ଏବଂ ତା'ର ୩ ଦିନ ପୂର୍ବରୁ ଏବଂ ଦିନକ ପରେ ; (Ogino) ଅଗିନୋ ତାହାକୁ ୮ ଦିନ ଧରିଅଛନ୍ତି; ଡମ୍ବାଣୁବହିଷ୍କରଣ ସମୟ ୧୨-୧୬ ଦିନ ଋତୁ ପୂର୍ବରୁ ଏବଂ ସେଥିରେ ୩ ଦିନ ଯୋଗ କରିବାକୁ ହେବ ।

ଓଗିନୋ ଏବଂ ନସ୍‌ଙ୍କର (Ogino-Knaus) ପ୍ରଣାଳୀଟି ଡିମ୍ବାଣୁ ବହିଷ୍କରଣ ସମୟ ଠିକ୍‌ରୂପେ ନିର୍ଦ୍ଧାରଣ କରିବା ଉପରେ ନିର୍ଭର କରେ । ତେଣୁ କୌଣସି ସ୍ତ୍ରୀ ଏହାକୁ କାର୍ଯ୍ୟକାରୀ କରିବା ପୂର୍ବରୁ ଋତୁର ତାରିଖମାନ ସଠିକ ୬ ମାସ ଧାରାବାହିକ ହିସାବକର ସେଥିରୁ କେଉଁ ସମୟରେ ଡିମ୍ବାଣୁ ବହିଷ୍କରଣ ହେଉଅଛି ତାହା ନିରୂପଣ କରିବାକୁ ହେବ ।

ଉଦାହରଣ ସ୍ୱରୂପ ଧରାଯାଉ—ଜଣେ ସ୍ତ୍ରୀଙ୍କର ଋତୁ ୨୭ ଦିନ ବ୍ୟବଧାନରେ ନିୟମିତରୂପେ ହୁଏ । ତାଙ୍କର ଋତୁ ଅସନ୍ତା ଜୁଲାଇ ୩ ତାରିଖରେ ଆରମ୍ଭ ହେବାର କଥା । ତେଣୁ ଅନ୍ୟ ଋତୁଟି ୨୯ ତାରିଖରେ ଆରମ୍ଭ ହେବ, ସେଥିରୁ ୧୨ କିମ୍ବା ୧୬ ଦିନ ପଛକୁ ଗଣି ନେଲେ, ଡିମ୍ବାଣୁ ବହିଷ୍କରଣ ସମୟ ଜୁଲାଇ ୧୪ ତାରିଖ ଠାରୁ ୧୮ ତାରିଖ ଭିତରେ ପଡ଼ୁଛି । ସେହି ସମୟରେ ୫ ଦିନ ପୂର୍ବରେ ଯୋଗ କରାଯାଉ ଏବଂ ଦିନ ତାର ପରେ ଯୋଗ କରାଯାଉ । ତାହାହେଲେ ଗର୍ଭନିୟନ୍ତ୍ରଣ ଦିଗରୁ ବିପଦସମୟ ହେଉଛି ଜୁଲାଇ ୯ ତାରିଖ ଠାରୁ ଜୁଲାଇ ୧୯ ତାରିଖ ପର୍ଯ୍ୟନ୍ତ । ଏହି ଦିନମାନଙ୍କରେ ଯୌନମିଳନ ବନ୍ଦ କରିବାକୁ ହେବ, କିମ୍ବା ଅନ୍ୟ ପ୍ରଣାଳୀର ଆଶ୍ରୟ ନେବାକୁ ହେବ । ୩୦ ଦିନ ବ୍ୟବଧାନରେ ଋତୁ ହେଉଥିଲେ ଏହି "ବିପଦ ସମୟ" ୧ ତାରିଖ ଠାରୁ ୨୨ତାରିଖ ପର୍ଯ୍ୟନ୍ତ ଧରିବାକୁ ହେବ । ତେଣୁ କୌଣସି ମାସ ଓ ତାରିଖ ହିସାବ ନ ଧରି ଏତିକି କୁହାଯାଇ ପାରେ ଯେ ଋତୁର ୭ ଦିନଠାରୁ ୨୨ ଦିନ ପର୍ଯ୍ୟନ୍ତ ଏହି ବିପଦ ସମୟ ଥାଏ ।

କିନ୍ତୁ ଯେଉଁଠାରେ ଋତୁର ବ୍ୟବଧାନରେ ବହୁତ ବ୍ୟତିକ୍ରମ ଥାଏ, ସେହି ଅବସ୍ଥାରେ ଏହି ନିରାପଦ ସମୟଉପରେ ନିର୍ଭର କରିବା ଅସମ୍ଭବ । ଋତୁ କେବେ ସବୁ ସମୟରେ ନିୟମିତ ଭାବରେ

ହେବା, ଏହା ଅଣାକହିବା ଅସ୍ୱାଭାବିକ । ଅନେକ କାରଣମାନ, ଯଥା—ଶାରୀରିକ, ପାରିପାର୍ଶ୍ୱିକ, କର୍ମାଗ୍ରମ୍ ଓ ମାନସିକ ଅବସ୍ଥା ପ୍ରଭୃତି ଋତୁକୁ ପ୍ରଭାବିତ କରିଥାଅନ୍ତି । ବିଶେଷ ଶରୀର ଅସୁସ୍ଥତା, ମାନସିକ ବିକାର, ଗର୍ଭାବସ୍ଥା, ଗର୍ଭାଧାନପର ଶିଶୁର ପାଳନ ଅବସ୍ଥା, ଜଳବାୟୁର ପରିବର୍ତ୍ତନ ପ୍ରଭୃତି କାରଣମାନ ଋତୁର ବ୍ୟବଧାନ ଏବଂ ନିୟମିତଭାବରେ ବ୍ୟତିକ୍ରମ ଆଣି ଥାଅନ୍ତି, ତେଣୁ ନିରାପଦ ସମୟକୁ କାର୍ଯ୍ୟକାରୀ କରିବାରେ ଏହିସବୁ ଅନ୍ତରାୟ ଅଛି । ଅଧିକ ମଧ୍ୟ ସ୍ୱାମୀ ପକ୍ଷରେ ସଂଯମ ପାଳନ କରିବାକୁ ହେବ, ତାହା କେତେଦୂର ସବୁ କ୍ଷେତ୍ରରେ କାର୍ଯ୍ୟକାରୀ ହେବ, ତାହା କେବଳ ସ୍ୱାମୀ ଓ ସ୍ତ୍ରୀଙ୍କର ମନର ଦୃଢ଼ତା ଉପରେ ନିର୍ଭର କରେ ।

କିନ୍ତୁ ଏହି ପ୍ରଣାଳୀଟିକୁ ଏକାକୀ ପ୍ରକୃଷ୍ଟ ଜନ୍ମନିୟନ୍ତ୍ରଣ ପ୍ରଥା ବୋଲି ଧରିନେବା ଉଚିତ ନୁହେଁ । କାରଣ ପ୍ରଣାଳୀର ଯେଉଁ କ୍ଷେତ୍ରରେ ଅନିଶ୍ଚିତତା ଅଛି ତାହା ଉପରେ ଦର୍ଶାଇ ଦିଆ ଯାଇଅଛି ।

୨ । **ଯାନ୍ତ୍ରିକ ଉପାୟ** (Mechanical Method):—

ଏହି ଉପାୟମାନଙ୍କ ମଧ୍ୟରୁ ବିସ୍ତୃତଭାବରେ ବ୍ୟବହୃତ ହୁଏ ସ୍ପଞ୍ଜ କିମ୍ବା ତାହା ପରିବର୍ତ୍ତରେ ଅନ୍ୟ କୌଣସି ପଦାର୍ଥର ବନ୍ଧା (Plug) । ଆଜିକାଲି ସ୍ପଞ୍ଜ ସବୁ ଭିନ୍ନ ଭିନ୍ନ ଆକାର ଓ ପ୍ରକାରର ମିଳେ, ତାକୁ ବାହାରକୁ ବାହାର କରିବା ନିମିତ୍ତ ଗୋଟିଏ ସୂତା ବନ୍ଧା ହୋଇଥାଏ । ଏହାକୁ ପରିଷ୍କାର ରଖାଯାଇ ପାରେ ଏବଂ ବିଶୋଧନ କରାଯାଇ ପାରେ । ସ୍ପଞ୍ଜଟି ପ୍ରଥମେ ବୋରିକ ଏସିଡ୍ ମିଶା ପାଣିରେ ଭିଜା ହୁଏ କିମ୍ବା କୌଣସି ଆଣ୍ଟିସେପ୍ଟିକ ମିଶା ତେଲରେ ବୁଡ଼ାଯାଏ । ତା ପରେ ଯୋନିରନ୍ଧ୍ର ଭିତରକୁ ଏପରି ଭାବରେ ପୁରାଇ ଦିଆହୁଏ ଯେ ଏହା ଜରାୟୁଗହ୍ୱର ମୁଖଟିକୁ

ଅବୃତ ରଖିବ । ସ୍ପଞ୍ଜ ଛଡ଼ା ଅନ୍ୟାନ୍ୟ ଜିନିଷ ମଧ୍ୟ ବ୍ୟବହାର କରାଯାଇପାରେ । ତୁଳା ବଣ୍ଡ୍ରାଟିଏ, କିମ୍ବା ସିଲ୍କ ରୁମାଲକୁ ବଣ୍ଡ୍ରା କରି ମଧ୍ୟ ବ୍ୟବହାର କରା ଯାଇପାରେ । ଅନେକ ଜନ୍ମନିୟନ୍ତ୍ରଣ ବିଶାରଦ ତୁଳାବଣ୍ଡ୍ରାକୁ ବୋରିକ ଏସିଡ୍ ଗୁଣ୍ଡା ମିଶା ଭେସ୍‌ଲିନରେ ଲଗାଇ ବ୍ୟବହାର କରିବାକୁ ଅନୁମୋଦନ କରିଅଛନ୍ତି । ଅଧ ଅଉନ୍ସ ବୋରିକ ଏସିଡ୍ ଅଧପାଉଣ୍ଡ ଭେସଲିନ୍‌ରେ ମିଶା ହେବା ଦରକାର । ଏହା ରାତିରେ ବ୍ୟବହାର କରି ତହିଁ ଆର ଦିନ ସକାଳୁ ବାହାର କରିଦେବ ଏବଂ ବାହାର କରିବା ପୂର୍ବରୁ ଡୁସ୍ କିମ୍ବା ପିଚ୍‌କାରୀ ବ୍ୟବହାର କଲେ ଅଧିକ ନିରାପଦ ହେବ । ଆର୍ଥିକ ଦୃଷ୍ଟିରୁ ଦେଖିବାକୁ ଗଲେ, ରବର ସ୍ପଞ୍ଜ କିମ୍ବା ତୁଳା, କିମ୍ବା ରୁମାଲର ଦାମ ଖୁବ୍ କମ୍ । ତେଣୁ ଆର୍ଥିକ ଦୃଷ୍ଟିରୁ ବ୍ୟବହାର କରିବା ଖୁବ୍ ସହଜ—ଅଧିକ ମଧ୍ୟ ଏହା ସହଜରେ ମିଳିପାରେ ଏବଂ ଏହା ବ୍ୟବହାର କରିବାକୁ ବିଶେଷ ଶିକ୍ଷାର ଦରକାର ନାହିଁ । ଏହି ତୁଳାବଣ୍ଡ୍ରା କିମ୍ବା ସ୍ପଞ୍ଜ ଉପଯୁକ୍ତ ମାପର ହେବା ଦରକାର । କିନ୍ତୁ ଯୌନମିଳନର ସ୍ୱାଚ୍ଛନ୍ଦ୍ୟରେ ଅନ୍ତରାୟ ହେବା ଭଳି ବେଶି ବଡ଼ ହେବା ଉଚିତ ନୁହେଁ । ଡାକ୍ତର ମେରି ଷ୍ଟୋପସ (Dr. Marie Stopes) ଉପଯୁକ୍ତ ଆକାରର ସ୍ପଞ୍ଜକୁ ଜଡାତେଲରେ ଭିଜାଇ ବ୍ୟବହାର କରିବାକୁ ଗୋଟିଏ ଉତ୍କୃଷ୍ଟ ଜନ୍ମନିୟନ୍ତ୍ରଣ ପ୍ରଣାଳୀ ବୋଲି ଅନୁମୋଦନ କରିଅଛନ୍ତି । କିନ୍ତୁ ଏହି ସ୍ପଞ୍ଜକୁ କିମ୍ବା ତୁଳାବଣ୍ଡ୍ରାକୁ କୌଣସି ଶୁକ୍ରକୀଟାଣୁ-ଧ୍ୱଂସକାରୀ ଜେଲି କିମ୍ବା ଜନ୍ମନିରୋଧ ଜେଲିରେ ଭିଜାଇବା ସବୁଠାରୁ ଉତ୍କୃଷ୍ଟ ପନ୍ଥା । ଜରାୟୁ ଯେଉଁଠାରେ ପଛକୁ ପଡ଼ି ଯାଇଥାଏ, ସେଥିରେ ଏହି ଉପାୟଟି କାର୍ଯ୍ୟକାରୀ ହୋଇ ପାରିବ ନାହିଁ । କାରଣ ତାହା ଜରାୟୁମୁଖର ପଛକୁ ଖସିଯିବ ।

କାଗଜର ପେଶାରିସବୁ ଜାପାନରେ ବେଶ୍ୟାମାନେ ବ୍ୟବହାର କରନ୍ତି । ତାହା ପତଳା କାଗଜରେ ତିଆରି । ଆଜିକାଲି ରବର ପେଶାରିର ବହୁଳ ବ୍ୟବହାର ହେଲାଣି । ଏହି ପେଶାରି ଯୌନରନ୍ଧ୍ରକୁ ଏବଂ ଜରାୟୁମୁଖଗହ୍ବରକୁ ଭଲଭାବରେ ଆବୃତ କରି ରଖେ । ମେନ୍ସିଙ୍ଗ କିମ୍ବା ଡଚ ପେଶାରି ପ୍ରଥମେ ଡାକ୍ତର ମେନ୍ସିଙ୍ଗଙ୍କ ଦ୍ୱାରା ୧୮୮୫ ମସିହାରେ ବ୍ୟବହୃତ ହୋଇଥିଲା । ପ୍ରଥମେ ଗୋଟିଏ ପତଳା ରବର ପର୍ଦ୍ଦା ଓ ତା' ଚତୁଃଆଡ଼େ ଗୋଟିଏ ଗୋଲାକାର କଠିନ ରବରର ଧାର ଦେଇ ତିଆରି ହୋଇଥିଲା । ପରେ ରବରର ଗୋଲେଇ ପରିବର୍ତ୍ତିରେ ଇସ୍ପାତ ଲୁହାର ଗୋଲେଇ ଦିଆଗଲା । ଏହି ପେଶାରି ତିଆରିରେ ନାନାପ୍ରକାର ପ୍ରଭେଦ ବର୍ତ୍ତମାନ ହେଲାଣି । ଡଲଣ ପେଶାରି ବୋଲି ଅନ୍ୟ ଏକ ପେଶାରିର ମଧ୍ୟ ବହୁଳ ପ୍ରଚାର ଅଛି । ଏହା ଶକ୍ତ ରବରରେ ତିଆରି । ଏଥିରେ ଲୁହା କିମ୍ବା କୌଣସି ରକମର ଧାତୁ ନ ଥାଏ । ଯେଉଁଠାରେ ଡଚ ପେଶାରି ବ୍ୟବହାର କରି ହେବ ନାହିଁ, ସେଠାରେ ଏହି ପେଶାରି ବ୍ୟବହାର କରାଯାଏ । ସ୍ତ୍ରୀଯୋନିର ବିଭିନ୍ନ ଆକାର ପ୍ରକାର ନେଇ, ପେଶାରି ସବୁ ଭିନ୍ନ ଆକୃତିର ତିଆରି ହୋଇଥାଏ । ଏହି ପେଶାରିର ମୂଲ୍ୟ ପ୍ରାୟ ଟ ୫୯ ପର୍ଯ୍ୟନ୍ତ ହେବ । ଏହି ପେଶାରି ସ୍ତ୍ରୀଯୋନିରୁ ବାହାର କରି, ଧୋଇ, ଶୁଖାଇ, ପାଉଡର ଦେଇ ଗୋଟିଏ ଟିଣ ବାକ୍ସରେ ରଖିବ ଏବଂ ଉତ୍ତାପରୁ ଦୂରରେ ରଖିବ । ବ୍ୟବହାର କରିବା ପୂର୍ବରୁ ଏହାକୁ ଭଲ କରି ପରୀକ୍ଷା କରି ଦେଖିବ । ଯେତେବେଳେ ରବର ଫାଟିବାକୁ ଆରମ୍ଭ କରିବ, ସେହି ପେଶାରିକୁ ଆଉ ବ୍ୟବହାର କରିବ ନାହିଁ । ଏହି ରବର ପେଶାରି ସଙ୍ଗେ ରାସାୟନିକ ଜନ୍ମନିରୋଧ ଜେଲି ବ୍ୟବହାର କରିବା ଆବଶ୍ୟକ । ପେଶାରିଟି ପ୍ରଥମେ ଡାକ୍ତରଙ୍କ ଦ୍ୱାରା କିମ୍ବା ସେ ବିଷୟରେ ଅଭିଜ୍ଞ ବ୍ୟକ୍ତିଙ୍କ

ଦ୍ୱାରା ପିନ୍ଧାଇବାକୁ ହେବ । ତା'ପରେ ସେ ସ୍ତ୍ରୀଙ୍କୁ ପେସାରୀଟି ଉପରେ କିପରି ପିନ୍ଧି ପାରିବେ ତାହା ଶିଖାଇ ଦେବାକୁ ହେବ; କାରଣ ସବୁ ସମୟରେ ସେ ଜନ୍ମନିୟନ୍ତ୍ରଣ କ୍ଲିନିକ୍ କିମ୍ବା ଡାକ୍ତରଙ୍କ ପାଖକୁ ଯିବା ସମ୍ଭବପର ହୋଇ ପାରିବ ନାହିଁ ।

୩ । **ରାସାୟନିକ ପଦ୍ଧତି** :—ଏହି ରାସାୟନିକ ପ୍ରକ୍ରିୟା ଦ୍ୱାରା ଯୌନାଙ୍ଗରେ ଶୁକ୍ରକୀଟାଣୁ ସବୁକୁ ନଷ୍ଟ କରି ଦିଆଯାଏ । ଏ ସବୁ ରାସାୟନିକ ପଦାର୍ଥ ଏପରି ହେବା ଉଚିତ ଯାହାକି କେବଳ ଶୁକ୍ରକୀଟାଣୁ ନଷ୍ଟ କରିବ କିନ୍ତୁ ଜରାୟୁ କିମ୍ବା ଯୋନିଦ୍ୱାରର ଆବରଣ ପର୍ଦ୍ଦାର କୌଣସି ଅନିଷ୍ଟ କରିବ ନାହିଁ ।

ରାସାୟନିକ ପ୍ରକ୍ରିୟାମାନଙ୍କ ମଧ୍ୟରୁ ଅତି ପ୍ରକୃଷ୍ଟ ଉପାୟ ହେଉଚି ଯାହାକି ବହୁତ ଦିନ ଧରି ଚଳି ଆସୁଅଛି । ଡୁସ୍ କିମ୍ବା ପିଚକାରୀ କରିବା, ରବର କିମ୍ବା ଧାତୁ ପେସାରୀ, ସ୍ପଞ୍ଜ ପ୍ରଭୃତି ବ୍ୟବହାର କରି ପରେ ଅନେକ ସ୍ତ୍ରୀ ଲୋକ ଡୁସ୍ କିମ୍ବା ପିଚକାରୀ ଉପରେ ନିର୍ଭର କରନ୍ତି । ଏହା ଦ୍ୱାରା ଶୁକ୍ରକୀଟାଣୁ ନଷ୍ଟ ହୋଇଯାଏ ଏବଂ ଶୁକ୍ର ଧୋଇ ହୋଇଯାଏ । ପିଚକାରୀ ପାଇଁ ଅନେକ ପ୍ରକାର ରାସାୟନିକ ପଦାର୍ଥ ବ୍ୟବହାର ହୁଏ, ଯଥା—ଭିନିଗାର, ବୋରିକ ଏସିଡ୍, ପଟାସିୟମ୍ ପରମ୍ୟାଙ୍ଗାନେଟ, ଛିନୋଶଲ୍, ଲାଇଜଲ୍, ଲାକ୍ଟିକ୍ଏସିଡ୍, ଟାର୍ଟାରିକ୍ ଏସିଡ୍, ଜିଙ୍କ୍ ସଲ୍‌ଫେଟ, ଲୁଣ, ସାବୁନ ପାଣି, ଅଣ୍ଡା, ଉଷୁମ ଓ ଗରମ ପାଣିରେ ଡୁସ ଦିଆହୁଏ । ଏହି ରାସାୟନିକ ପଦାର୍ଥମାନଙ୍କ ମଧ୍ୟରୁ ଏସିଡ୍ ବଡ଼ ଉପାଦେୟ ପଦାର୍ଥ । ଯଦି ଯୋନିଦ୍ୱାରରେ ଅତିରିକ୍ତ ଏସିଡ୍ ଥାଏ, ତାହାହେଲେ ତାହା ଜନ୍ମନିରୋଧ ପ୍ରକ୍ରିୟାକୁ ସାହାଯ୍ୟ କରେ । ଶତକଡ଼ା ଏକଭାଗ ଲାକ୍ଟିକ୍ ଏସିଡ଼ କିମ୍ବା ଭିନିଗାର ଚାମଚେ ଏକ ପାଇଣ୍ଟ ପାଣିରେ ବ୍ୟବହାର କରାଯାଇ ପାରେ । ଡୁସ୍ କିମ୍ବା ପିଚ୍‌କାରୀ ସିରିଞ୍ଜ ଦ୍ୱାରା

କରାଯାଏ । ଡୁସ୍ ବସିକରି କିମ୍ବା ଶୋଇକରି ନିଆ ଯାଇପାରେ । କିନ୍ତୁ ଡୁସ୍ ଯୌନରନ୍ଧ୍ରର ପ୍ରତ୍ୟେକ ଅଂଶକୁ ଭଲଭାବରେ ଶୁକ୍ର-କୀଟାଣୁକୁ ମାରିବା ଭଳି ଦିବା ଆବଶ୍ୟକ । ଏହି ଡୁସ ଯୌନମିଳନର ଠିକ୍ ପରେ ଦେବା ଆବଶ୍ୟକ । ଡୁସ୍‌ରେ ଅନେକ ଅସୁବିଧା ଅଛି । ଯୌନମିଳନ ପର କ୍ଳାନ୍ତ ଅବସ୍ଥାରେ ସ୍ତ୍ରୀର ଡୁସ୍ ନେବାରେ ଅନିଚ୍ଛା ସ୍ୱାଭାବିକ । ଗରମପାଣି ସହଜରେ ମିଳି ନ ପାରେ ଏବଂ ଡୁସ୍ କରିବା ଦ୍ୱାରା ଅନେକ ସମୟରେ, ଜରାୟୁର ଫୁଲା ଏବଂ ଡିମ୍ବକୋଷର ଫୁଲା ପ୍ରଭୃତି ହୋଇପାରେ । ତା ଛଡ଼ା ଯୌନରନ୍ଧ୍ରରେ ଥିବା ଡୋଡରଲିନ୍ ବାସିଲାଇ ଯାହା କି ଯୋନିରନ୍ଧ୍ରକୁ ଅନ୍ୟାନ୍ୟ ଜୀବାଣୁ ଆକ୍ରମଣରୁ ରକ୍ଷା କରେ ତାହା କ୍ରମଶଃ ଧୋଇ ହୋଇଯାଏ । ଡୁସ୍‌ର ଦାମ ଟ ୫୭ ଠାରୁ ଟ ୭୯ ପର୍ଯ୍ୟନ୍ତ ହେବ ।

ଡୁସ୍ ପରେ ଅନ୍ୟ ଲୋକପ୍ରିୟ ଉପାୟ ହେଉଛି ତରଳ ସୁପୋଜିଟୋରୀ; କାରଣ ତାର ତରଳିବାର ଉତ୍ତାପ ହେଉଛି ମନୁଷ୍ୟ ଦେହର ଉତ୍ତାପ ସଙ୍ଗେ ସମାନ । କୁଇନାଇନ୍ ବାଇସଲଫେଟ୍, ସାଲିସିଲିକ୍ ଏସିଡ୍ ସହିତ ବ୍ୟବହାର ବହୁତ ଦେଖାଯାଏ । ଏହିସବୁ ସୁପୋଜିଟୋରୀ ବ୍ୟବହାରରେ କେତେକ ଅସୁବିଧା ଅଛି । ଏକେତ ଏହା ଭଲଭାବରେ ତରଳି ଯୌନରନ୍ଧ୍ରର ଉପରଭାଗକୁ ଆବୃତ କରିବା ଉଚିତ; ଦ୍ୱିତୀୟତଃ ଅନେକ ସମୟରେ ତେଲଜାତୀୟ ପଦାର୍ଥ ଯୌନରନ୍ଧ୍ରରେ ଲାଗିବା ଦ୍ୱାରା ଖରାପ ବୋଧହୁଏ ।

କେତେକ ପ୍ରକାର ରାସାୟନିକ ଗୋଲି ବା ବଟିକା ମଧ୍ୟ ବ୍ୟବହାର କରିବା ପାଇଁ ଜନ୍ମନିୟନ୍ତ୍ରଣ-ବିଶାରଦମାନେ ଲେଖି ଅଛନ୍ତି । ଏହି ଗୋଲିରେ ଟାଟାରିକ୍ ଏସିଡ୍, ସୋଡ଼ା-

ପରକ୍ସୋରେଟ୍ ପ୍ରଭୃତି ଥାଏ ଏବଂ ବୋରିକ୍ ଏସିଡ୍ ଓ ଟ୍ୟାନୋଷଲ୍ ମଧ୍ୟ ଥାଏ । ଯୌନଯନ୍ତ୍ରର ଉର୍ଦ୍ଧ୍ୱଭାଗରେ ସେଥିରୁ ଶୁକ୍ରକୀଟାଣୁ କ୍ଷୟକାରୀ ଗ୍ୟାସ୍ ବାହାରି ଯୋନିରନ୍ଧ୍ରର ସବୁଆଡ଼େ ଭର୍ତ୍ତିହୋଇ ଯାଏ । ଅନେକ ସମୟରେ ଯୋନିରନ୍ଧ୍ରର ଉର୍ଦ୍ଧ୍ୱଭାଗରେ ଏହି ଗୋଲି ନ ତରଳି ଯାଇ, ଗ୍ୟାସ ନ ଦେଇ ପାରେ । ଏହି ଗୋଲିର ଶୁକ୍ରକୀଟାଣୁ-କ୍ଷୟକାରିତା ଏକ ଘଣ୍ଟାରୁ ବେଶୀ ରହେ ନାହିଁ । ଏହି ଗୋଲିର ଦାମ ପ୍ରତି ଡଜନ ପ୍ରତି ଟ ୧୮ ରୁ ଟ ୩୯ ପର୍ଯ୍ୟନ୍ତ ହେବ ।

ଜନ୍ମନିରୋଧ ଜେଲ୍ ଗୋଟିଏ ନଳୀରେ ଥାଏ । ତାର ଟିପି ଖୋଲିଲେ ସେଥିରେ ଗୋଟିଏ ଛୋଟ ନଳୀ ଥାଏ । ସେହି ନଳୀ ଦ୍ୱାରା ସ୍ତ୍ରୀ ଯୋନିରେ ସେହି ଜେଲ୍‌କୁ ଭର୍ତ୍ତିକରି ଦିଆଯାଏ । ଏହି ଜେଲ୍ ଯୌନମିଳନ ପୂର୍ବରୁ ବ୍ୟବହାର କରିବା ଉଚିତ । କୁଇନାଇନ୍, ଟ୍ୟାନୋଶଲ, ଲାକ୍‌ଟିକ୍ ଏସିଡ୍, ବୋରିକ୍ ଏସିଡ୍ ପ୍ରଭୃତି ରାସାୟନିକ ପଦାର୍ଥ ଏଥିରେ ବ୍ୟବହାର କରାହୁଏ । ଲାକ୍‌ଟିକ୍ ଏସିଡ୍ ଜେଲି ବଡ଼ ଲୋକପ୍ରିୟ । ଏହି ଜେଲ୍ ନଳୀ ସହିତ ଦାମ ପ୍ରାୟ ଟ ୩ୟ ବା ଟ ୪୦ ହେବ । କେବଳ ରାସାୟନିକ ଜନ୍ମନିୟନ୍ତ୍ରଣ ପଦାର୍ଥମାନ ବିଶ୍ୱାସଯୋଗ୍ୟ ଉପକରଣ ବୋଲି ନିର୍ଭର କରାଯାଇ ନ ପାରେ; କାରଣ ଜେଲି, ମଲମ, ଟାବ୍‌ଲେଟ୍ ସବୁ ବ୍ୟବହାର କରିବା ପୂର୍ବରୁ ସେସବୁ କେତେଦୂର ଶୁକ୍ରକୀଟାଣୁ-କ୍ଷୟକାରୀ ହୋଇ ପାରିବ ତାହା ପରୀକ୍ଷା କରିବାର ଉପାୟ ନାହିଁ ଏବଂ ସେଗୁଡ଼ିକ ଅନେକ ଦିନର ପୁରୁଣା ଜିନିଷ ହୋଇ ପାରିଥାନ୍ତି, ଯାହାର କି ଶୁକ୍ରକୀଟାଣୁକୁ ରାସାୟନିକ ପ୍ରକ୍ରିୟାଦ୍ୱାରା ନଷ୍ଟ କରିବା ଶକ୍ତି କମି ଯାଇଅଛି । ତେଣୁ ଏ ସବୁ ଜିନିଷ ବିଶ୍ୱାସଯୋଗ୍ୟ ଦୋକାନ କିମ୍ବା ଫାର୍ମରୁ କିଣିବା ଦରକାର ।

୪ । ଆଧୁନିକ ଅସ୍ତ୍ରୋପଚାର :—ଅଧୁନାତନ ଅସ୍ତ୍ରଚିକିତ୍ସା ଦ୍ୱାରା ସମ୍ପୂର୍ଣ୍ଣ ଜନ୍ମନିରୋଧ କରିପାରିବାର ସୁବିଧା ଅଛି । ଏହାଦ୍ୱାରା ଯୌନମିଳନ ବାସନା ଏବଂ ଯୌନମିଳନରେ କୌଣସି ବ୍ୟାଘାତ ଘଟେ ନାହିଁ, କିମ୍ବା ଶରୀର ଉପରେ କୌଣସି ପ୍ରକାର ଅନିଷ୍ଟକର ପ୍ରକ୍ରିୟା ଆଣେ ନାହିଁ । ପୁରୁଷମାନଙ୍କ ପାଇଁ ଅସ୍ତ୍ରଚିକିତ୍ସା ଦ୍ୱାରା ଶୁକ୍ରକୀଟାଣୁ ମୂତ୍ରକୋଷରୁ ଯେଉଁ ନଳଦ୍ୱାରା ଆସେ ତାକୁ ବନ୍ଦକରି ଦିଆଯାଏ—ତେଣୁ ଶୁକ୍ରକୀଟାଣୁ ପୁରୁଷ ଯୋନିକୁ ଯାଇପାରେ ନାହିଁ ।

ସ୍ତ୍ରୀମାନଙ୍କ ପକ୍ଷରେ ଜରାୟୁଠାରୁ ଯେଉଁ ନଳ ଯାଇଅଛି, ତାକୁ ବନ୍ଦ କରି ଦିଆଯାଏ । ତଦ୍ଦ୍ୱାରା ଡିମ୍ବାଣୁ ଡିମ୍ବକୋଷରୁ ବାହାରି ଜରାୟୁକୁ ଆସି ପାରେ ନାହିଁ ।

ଯେଉଁସବୁ ଜନ୍ମନିୟନ୍ତ୍ରଣ ପ୍ରଥାଗୁଡ଼ିକର ବିଷୟ ଆଲୋଚନା କରାଗଲା ଅସ୍ତ୍ରୋପଚାର ପ୍ରଥାକୁ ଛାଡ଼ିଦେଲେ, ଗୋଟିଏ କିମ୍ବା ଦୁଇଟି ଜନ୍ମ-ନିରୋଧ ପ୍ରଣାଳୀ ଏକସଙ୍ଗେ ବ୍ୟବହାର କରିବା ଉଚିତ । ଜନ୍ମ-ନିୟନ୍ତ୍ରଣ ପ୍ରଥାର ସଫଳତା କୌଣସି ପ୍ରଥାର ଅବଲମ୍ବନ କରି ଯେତେ ସମ୍ଭବ ହୋଇ ନାହିଁ କିନ୍ତୁ ତା'ର ବ୍ୟବହାରର ଅନିୟମିତତା ଯୋଗୁ ଘଟି ଅଛି, ତେଣୁ ସେହି ପ୍ରଥାଗୁଡ଼ିକୁ ନିୟମିତଭାବରେ ବ୍ୟବହାର କଲେ, ଜନ୍ମନିୟନ୍ତ୍ରଣ ସଫଳ ହେବ । ସେଥିପାଇଁ ପ୍ରତ୍ୟେକ ବିବାହିତ ଦମ୍ପତିର ମନର ଦୃଢ଼ତା ଏବଂ ଏକନିଷ୍ଠତା ଅବଶ୍ୟକ । ଯେ କୌଣସି ପ୍ରଣାଳୀକୁ ନିଜର ରୁଚି ଏବଂ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ଅବଲମ୍ବନ କରିବାକୁ ହେବ । ଅବଶ୍ୟ ଏ ବିଷୟରେ ଶିକ୍ଷା ଦେବା ନିମିତ୍ତ ଜନ୍ମନିୟନ୍ତ୍ରଣ କେନ୍ଦ୍ରର ପ୍ରତିଷ୍ଠା ନିତାନ୍ତ ଆବଶ୍ୟକ । ଏହି କେନ୍ଦ୍ରରେ ପ୍ରତ୍ୟେକ ବିବାହିତ ପୁରୁଷ ଓ ସ୍ତ୍ରୀ ଜନ୍ମନିୟନ୍ତ୍ରଣ ପ୍ରଥା ବିଷୟରେ ଜ୍ଞାନ

ଏବଂ ଉପକରଣମାନଙ୍କ ବ୍ୟବହାର ବିଷୟରେ ଶିକ୍ଷା ପାଇ ପାରିବେ । ଉପଯୁକ୍ତ ଜନ୍ମନିୟନ୍ତ୍ରଣ ଉପକରଣମାନ ସୁଲଭ ମୂଲ୍ୟରେ ଏହି କେନ୍ଦ୍ରମାନଙ୍କ ସାହାଯ୍ୟରେ ଯୋଗାଇବାର ବ୍ୟବସ୍ଥା ମଧ୍ୟ ରହିବା ଉଚିତ ।

---

ମୁଦ୍ରାକର—ଶ୍ରୀ ଉମାଚରଣ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ,
କଟକ—୧୯୫୨